# ଭୂମିକା

ମୁସଲମାନ ହୁଅନ୍ତୁ ବା ଅନ୍ୟ ଯେ କୌଣସି ଧର୍ମାବଲମ୍ବୀ, ଅନେକ ଭାଇ-ଭଉଣୀଙ୍କ ପାଇଁ ଇସଲାମ୍ ଏବେ ମଧ୍ୟ ଏକ ଅବୁଝା ଧର୍ମ ହୋଇ ରହିଛି । ଏହି ଧର୍ମ ବିଷୟରେ ଅଜ୍ଞତା ଓ ଅପପ୍ରଚାର ଅନେକ ଭ୍ରାନ୍ତି ଧାରଣା ସୃଷ୍ଟି କରିଛି ଏବଂ ଜନସମାଜରେ ଏହାକୁ ଏକ ନିର୍ଦ୍ଦୟ ଏବଂ ଅମାନବିକ ଧର୍ମ ରୂପେ ଉପସ୍ଥାପିତ କରୁଛି ।

କିନ୍ତୁ ପ୍ରକୃତରେ ଇସଲାମ ଏକ ସୁନ୍ଦର ଜୀବନ ମାର୍ଗ । ଏହାର କୌଣସି ଶିକ୍ଷା, ସତ୍ୟ ଓ ନ୍ୟାୟର ବିରୋଧୀ ନୁହେଁ କିମ୍ବା ଏହାର କୌଣସି ବିଧି ମାନବ ସମାଜ ପାଇଁ କ୍ଷତିକାରକ ନୁହେଁ । ଧର୍ମ ମାନବ ଜାତିର କଲ୍ୟାଣ ପାଇଁ ଉଦ୍ଦିଷ୍ଟ, ଏଣୁ ଏହାର ଶିକ୍ଷା ମାନବ-କଲ୍ୟାଣର ପରିପନ୍ଥୀ ହେବା ସଂଭବ ନୁହେଁ । ଇସଲାମ ସମାଜରେ ପ୍ରେମ ଓ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ଚାହେଁ । ଘୃଣା ବା ଅଶାନ୍ତିର ଅଗ୍ନି ଜଳାଇବା ଏହାର ଉଦ୍ଦେଶ୍ୟ ନୁହେଁ । ଯେଉଁ ଧର୍ମ ମାନବ ସମାଜର କ୍ଷତି ସାଧନ କରେ, ମଣିଷ-ମଣିଷ ମଧ୍ୟରେ ଘୃଣା ଓ ଭେଦଭାବ ସୃଷ୍ଟି କରେ କିମ୍ବା ଅଯଥା ରକ୍ତପାତ କରିବାର ଶିକ୍ଷା ଦିଏ, ତାକୁ କଦାପି ମାନବଧର୍ମ କୁହାଯାଇ ନପାରେ । ମାନବ କଲ୍ୟାଣର ପରିପନ୍ଥୀ କୌଣସି ଜୀବନ-ବ୍ୟବସ୍ଥା, କୌଣସି ବିଶ୍ୱାସ ବା ଆଚରଣ 'ମାନବଧର୍ମ' ପଦବାଚ୍ୟ ନୁହେଁ । ଏହି କାରଣରୁ ମାନବସମାଜର ଧନ-ଜୀବନ, ମାନ-ସମ୍ମାନ ବା ଚରିତ୍ର ପ୍ରତି ହାନିକାରକ ସମସ୍ତ ଆଚରଣ ଗୁଡ଼ିକୁ ଇସଲାମରେ ନିଷିଦ୍ଧ କରାଯାଇଛି । ଏପରିକି ପଶୁପକ୍ଷୀଙ୍କୁ ଅଯଥା କଷ୍ଟ ଦେଲେ ମଧ୍ୟ ମନୁଷ୍ୟ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ ରହିବ । ସାମାନ୍ୟ ପିମ୍ପୁଡ଼ିଟିକୁ ମଧ୍ୟ ଅନ୍ୟାୟରେ ମାରିଦେବା ପାଇଁ ଇସଲାମ ଅନୁମତି ଦେଇନାହିଁ ।

ଏଭଳି ଏକ ଧର୍ମ ବିଷୟରେ ଭ୍ରାନ୍ତ ଧାରଣା ରହିବା ଅତ୍ୟନ୍ତ ଦୁଃଖଦାୟକ ।

ଇସଲାମ ନାମରେ ଯାହା ସବୁ ହୁଏ, ସବୁ ଗୁଡ଼ିକ ଇସଲାମ ବିଧି ସମ୍ମତ ନୁହେଁ । କିଛି ଭାରତୀୟ ନାଗରିକ ଯଦି ଦେଶର ଆଇନ ଅମାନ୍ୟ କରି ଚୋରି ବା ଡକାୟତି କରନ୍ତି, ତେବେ ସମସ୍ତ ଭାରତବାସୀଙ୍କୁ ଚୋର ଭାବିବା କିମ୍ବା ଦେଶର ସମ୍ବିଧାନକୁ ଦୋଷ ଦେବା ଆଦୌ ଠିକ୍ ନୁହେଁ । ସେହିପରି କେତେକ ମୁସଲମାନ ବ୍ୟକ୍ତିଙ୍କର ଆଚରଣ ଇସଲାମର ମାନଦଣ୍ଡ ହୋଇ ନପାରେ ।

ଇସଲାମ ବିଷୟରେ ଜାଣିବା ନିମନ୍ତେ ଆଗ୍ରହୀ ଭାଇ-ଭଉଣୀ ମାନଙ୍କର ସହାୟତା ପାଇଁ, ସମାଜରେ ଶାନ୍ତି ଓ ସାଂପ୍ରଦାୟିକ ସଦ୍‌ଭାବର ଉନ୍ନତି ପାଇଁ ଏବଂ ଧର୍ମ ନାମରେ ବିଭାଜିତ **'ମାନବ-ପରିବାର'**ର ସଦସ୍ୟ ମାନଙ୍କୁ ପରସ୍ପରର ନିକଟବର୍ତ୍ତୀ କରିବା ପାଇଁ ଏଇ କ୍ଷୁଦ୍ର ପୁସ୍ତକଟି ମୋର ଏକ ପ୍ରାରମ୍ଭିକ ପଦକ୍ଷେପ ।

'ଧର୍ମ' ମାନବଜାତି ପାଇଁ ଏକ ଈଶ୍ୱରଦତ୍ତ ଜୀବନମାର୍ଗ । ଈଶ୍ୱରବିଶ୍ୱାସ ହିଁ ଏହାର ମୂଳାଧାର । ଈଶ୍ୱରଙ୍କୁ ବାଦ୍ ଦେଇ ଧର୍ମର ପରିକଳ୍ପନା କରାଯାଇନପାରେ । ଏହି ପୁସ୍ତକରେ ମୁଁ ଇସଲାମର ପ୍ରଥମ ଶିକ୍ଷା ତଥା ଧର୍ମର ପ୍ରଥମ ସିଦ୍ଧାନ୍ତ 'ଏକେଶ୍ୱରବାଦ' ଉପରେ ଆଲୋଚନା କରିଛି ଏବଂ ଏହି ଶିକ୍ଷା ଯେ ବିଶ୍ୱର ଚାରିଗୋଟି ବୃହତ ଧର୍ମର ସର୍ବୋଚ୍ଚ ଗ୍ରନ୍ଥରେ ସମାନ ଭାବରେ ରହିଛି ଏହା ପ୍ରମାଣିତ ମଧ୍ୟ କରିଛି ।

ଅବଶ୍ୟ ଏପରି କୌଣସି ଧର୍ମ ମତବାଦ ନାହିଁ ଯେଉଁଥିରେ ସମସ୍ତ ବିଶ୍ୱବାସୀ ଶତପ୍ରତିଶତ ଏକମତ ହୋଇପାରିବେ । ବିଭିନ୍ନ

ଧର୍ମ ଗୁଡ଼ିକ ମଧ୍ୟରେ ତୀବ୍ର ମତଭେଦ । ହିନ୍ଦୁ, ମୁସଲମାନ ଏବଂ ଖ୍ରୀଷ୍ଟିୟାନ - ଏମାନଙ୍କ ମଧ୍ୟରୁ ପ୍ରତ୍ୟେକ ଅନେକ ଗୋଷ୍ଠୀ ଓ ଶାଖା ପ୍ରଶାଖାରେ ବିଭକ୍ତ । କୌଣସି ଧର୍ମଗ୍ରନ୍ଥର ଏକ ନିର୍ଦ୍ଦିଷ୍ଟ ବ୍ୟାଖ୍ୟା ସେହି ଧର୍ମର ସମସ୍ତ ଅନୁଗାମୀ ମାନଙ୍କ ପାଇଁ ଗ୍ରହଣୀୟ ହୋଇପାରି ନାହିଁ । ଏପରି ସ୍ଥଳେ ଈଶ୍ୱରବାଦ ବିଷୟରେ ମତପାର୍ଥକ୍ୟ ରହିବା ଅସ୍ୱାଭାବିକ ନୁହେଁ ।

ତଥାପି ବିଭିନ୍ନ ଧର୍ମଗ୍ରନ୍ଥରେ ସମାନ ଭାବରେ ରହିଥିବା ସୁନ୍ଦର ସୁନ୍ଦର ଶିକ୍ଷା ଗୁଡ଼ିକ ସାଂପ୍ରଦାୟିକ ସମନ୍ୱୟ କ୍ଷେତ୍ରରେ ସହାୟକ ହୋଇପାରେ ଏବଂ ଧର୍ମ ନାମରେ କଳହରତ ମାନବ-ପରିବାରରେ ବିଶ୍ୱ-ଭ୍ରାତୃତ୍ୱର ସଂଚାର କରିପାରେ । ଏହି ଆଶା ନେଇ ପୁସ୍ତକଟି ରଚିତ । ଯଦି ଏହା ଇସଲାମକୁ ବୁଝିବା ଦିଗରେ ଏବଂ ପାରସ୍ପରିକ ସ୍ନେହ ଓ ପ୍ରେମର ଉନ୍ନତି ପଥରେ କିଛିଟା ସାହାଯ୍ୟ କରିପାରେ, ତେବେ ମୋର ଶ୍ରମ ସାର୍ଥକ ହେବ ।



**ଲେଖକ**

# ସୂଚୀପତ୍ର

# ମାନବ ଜାତି ଗୋଟିଏ ପରିବାର

ଆମେ ମନୁଷ୍ୟ - ବିଶ୍ୱର ଶ୍ରେଷ୍ଠତମ ଜୀବ । ଭିନ୍ନ ସଂପ୍ରଦାୟ ଏବଂ ଭିନ୍ନ ବଂଶରେ ଆମେ ଜନ୍ମ ନେଇଛୁ ନିଶ୍ଚୟ, ଆମ ଭାଷା ଏବଂ ବର୍ଣ୍ଣରେ ମଧ୍ୟ ଭିନ୍ନତା ରହିଛି, ତଥାପି ଆମେ ଏହି ଚରମ ସତ୍ୟଟିକୁ ଅସ୍ୱୀକାର କରିପାରିବା ନାହିଁ ଯେ ଆମେ ସମସ୍ତେ ମନୁଷ୍ୟ - ଗୋଟିଏ ଜାତି ଏବଂ ଗୋଟିଏ ପରିବାରର ସଦସ୍ୟ ।

ସମସ୍ତେ ଭାଇ ବନ୍ଧୁ କୁଟୁମ୍ବ - "ବସୁଧୈବ କୁଟୁମ୍ବକମ୍" ।

ଏକ ଧରାପୃଷ୍ଠରେ ଆମେ ବାସ କରୁ, ଗୋଟିଏ ସୂର୍ଯ୍ୟ ସଭିଙ୍କ ପାଇଁ ଆଲୋକର ଉତ୍ସ, ଗୋଟିଏ ଉଦ୍ୟାନ ସମସ୍ତଙ୍କର ଖାଦ୍ୟର ଭଣ୍ଡାର, ଗୋଟିଏ ଜଳ ଧାରା ଆମ ତୃଷା ନିବାରଣ କରେ, ସଂପୂର୍ଣ୍ଣ ପରିବାର ପାଇଁ ଗୃହକର୍ତ୍ତାଙ୍କର ଗୋଟିଏ ମାତ୍ର ବ୍ୟବସ୍ଥା । ସେଇ ହିଁ ସମସ୍ତଙ୍କର ପାଳନକର୍ତ୍ତା, ହର୍ତ୍ତା କର୍ତ୍ତା - ଭାଗ୍ୟ-ବିଧାତା ।

ଏହି ପରିବାରର ସଦସ୍ୟମାନଙ୍କର ଶାରୀରିକ ଗଠନ ଏକା ପରି,
ଏକା ରକ୍ତ ସଭିଙ୍କ ଦେହରେ ପ୍ରବାହିତ,
ସେମାନଙ୍କର ପ୍ରାକୃତିକ ଆବଶ୍ୟକତାରେ ମଧ୍ୟ ପାର୍ଥକ୍ୟ ନାହିଁ,
କାମନା - ବାସନା ଏକା,
ମାନବୀୟ ଦୁର୍ବଳତା ସଭିଙ୍କର ରହିଛି,
ଭୋକ-ଶୋଷ, ଗ୍ରୀଷ୍ମ-ଶୀତ ସଭିଙ୍କୁ ସମଭାବରେ ଅନୁଭୂତ ହୁଏ,
ଇନ୍ଦ୍ରିୟ ସମଭାବରେ ସମସ୍ତଙ୍କୁ ଆକର୍ଷିତ କରେ,
ସଂସାରର ମୋହ ସଭିଙ୍କୁ ପ୍ରଲୋଭିତ କରେ,
ବିପଦରେ ସମସ୍ତେ ଐଶ୍ୱରୀୟ ସହାୟତା ଲୋଡ଼ନ୍ତି ଏବଂ
ଉଦ୍ଧାରକର୍ତ୍ତାଙ୍କର ପ୍ରୟୋଜନ ସଭିଙ୍କି ପଡ଼ିଥାଏ ।

ଏଇଠି ଟିକେ ରହିଯାଇ ନିଜ ଅନ୍ତରକୁ ପ୍ରଶ୍ନ କରିବା ଯେ ସମାନ ସ୍ୱଭାବ ଏବଂ ସମାନ ମାନବୀୟ ଦୁର୍ବଳତା ଥିବା ଗୋଟିଏ ପରିବାରର ସଦସ୍ୟମାନଙ୍କ ପାଇଁ ସେମାନଙ୍କ ପାଳନକର୍ତ୍ତା କେତେଗୋଟି ଧର୍ମ ନିରୁପଣ କରିଛନ୍ତି ଏବଂ କେତୋଟି ଜୀବନପନ୍ଥା ଦେଇଛନ୍ତି ?

# ମାନବ ଧର୍ମ ଗୋଟିଏ

ଯଦି ଆମେ ଗଭୀର ଭାବେ ଚିନ୍ତା କରୁ ତେବେ ଆମ ଅନ୍ତରାତ୍ମା ନିଶ୍ଚୟ କହିଉଠିବ ଯେ ସମଗ୍ର ମାନବ ପରିବାର ପାଇଁ ଗୋଟିଏ ଧର୍ମ ବା ଗୋଟିଏ ହିଁ ମାର୍ଗ ରହିବା ଉଚିତ୍ । ଯଦି ଈଶ୍ୱର ଏକ, ମାନବ ଜାତି ଏକ, ତେବେ ମାନବଧର୍ମ ଅବଶ୍ୟ 'ଏକ' ହେବା ଉଚିତ୍ ।



ବାସ୍ତବରେ ଏହା ସତ୍ୟ ମଧ୍ୟ । ଈଶ୍ୱରଦତ୍ତ ଧର୍ମ ଯୁଗେ ଯୁଗେ ଏକହିଁ ରହିଆସିଛି । ବିଭିନ୍ନ ଧର୍ମରେ ବିଭାଜିତ ଏଇ ମାନବ ସମାଜକୁ ଈଶ୍ୱର ନିଜେ ଖଣ୍ଡ-ବିଖଣ୍ଡିତ କରି ନାହାନ୍ତି । ଏହି କାର୍ଯ୍ୟ ମନୁଷ୍ୟ ହିଁ କରିଛି । ଈଶ୍ୱର ମାନବ ଜାତି ପାଇଁ ଗୋଟିଏ ମାତ୍ର ଧର୍ମ-ବ୍ୟବସ୍ଥା ଦେଇଛନ୍ତି । ସୃଷ୍ଟିର ଆରମ୍ଭରୁ ପ୍ରଚଳିତ ଏହି ଆଦି ସନାତନ ଧର୍ମ ଯୁଗେ ଯୁଗେ ଏକ ହିଁ ରହିଛି । ସେହି ଗୋଟିଏ ଧର୍ମର ସଂଦେଶ ଦେବାପାଇଁ ଏଇ ଧରା ପୃଷ୍ଠରେ ଲକ୍ଷାଧିକ ମାର୍ଗଦର୍ଶକ ବା ଧର୍ମ ପ୍ରବର୍ତ୍ତକ (Prophets) ଆସିଛନ୍ତି ଏବଂ ଅନେକ ଦିବ୍ୟଗ୍ରନ୍ଥର ଅବତରଣ ହୋଇଛି । ବିଭିନ୍ନ ଭାଷାରେ, ବିଭିନ୍ନ ସମୟରେ ଏବଂ ପୃଥିବୀର ବିଭିନ୍ନ ସ୍ଥାନରେ ପ୍ରକଟିତ ହୋଇଥିବା ସତ୍ତ୍ୱେ ସମସ୍ତ ଈଶ୍ୱରୀୟ ଗ୍ରନ୍ଥ ଗୁଡ଼ିକର ସିଦ୍ଧାନ୍ତ ଏବଂ ମୌଳିକ ଶିକ୍ଷା ସମାନ ଥିଲା, କାରଣ ସମସ୍ତ ଦିବ୍ୟଗ୍ରନ୍ଥ ଏକ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ ହୋଇଥିଲା ଏବଂ ତାଙ୍କରି ଦିବ୍ୟବାଣୀ ବହନ କରିଥିଲା ।

କିନ୍ତୁ କାଳ କ୍ରମେ ''ଧର୍ମ'' ଅପଭ୍ରଂଶ ହେଲା । ବିଭିନ୍ନ ସମୟରେ ଧର୍ମଗୁରୁ ମାନେ ନିଜର ସ୍ୱାର୍ଥ ପାଇଁ ଧର୍ମଗ୍ରନ୍ଥ ମାନଙ୍କରେ ପରିବର୍ତ୍ତନ କଲେ, ଯାହା ଫଳରେ

ଦିବ୍ୟଶିକ୍ଷା ବିକୃତ ହୋଇପଡ଼ିଲା । ତଥାପି ଆଜି ମଧ୍ୟ ସେଇ ଦିବ୍ୟ ଧର୍ମଧାରାର ଝଲକ ବିଶ୍ୱରେ ପ୍ରଚଳିତ ଅନେକ ଧର୍ମଗ୍ରନ୍ଥ ଗୁଡ଼ିକରେ ଦେଖିବାକୁ ମିଳେ ।

## ଧର୍ମ ଏକ ଜୀବନ ମାର୍ଗ

ଧର୍ମ କେବଳ ଏକ ବିଶ୍ୱାସ ବା ପୂଜା ଅର୍ଚ୍ଚନାର ନାମ ନୁହେଁ । ଏହା ଉପାସନା କୈନ୍ଦ୍ରିକ ଏକ ସଂପୂର୍ଣ୍ଣ ଜୀବନ ବ୍ୟବସ୍ଥା । 'ଧର୍ମ' ମାନବ ସମାଜର ଇହକାଳ ଓ ପରକାଳର କଲ୍ୟାଣ ପାଇଁ ସ୍ରଷ୍ଟାଙ୍କ ଦ୍ୱାରା ପ୍ରେରିତ ଏକ ଜୀବନ ମାର୍ଗ । ଏହି ମାର୍ଗର ଅନୁସରଣ ଦ୍ୱାରା ଧରାପୃଷ୍ଠରେ ଶାନ୍ତି ପ୍ରତିଷ୍ଠିତ ହୁଏ ଏବଂ ପରଲୋକରେ ସ୍ୱର୍ଗପ୍ରାପ୍ତି ହୁଏ ।

ଧର୍ମ ବ୍ୟବସ୍ଥାଟି ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ । ଏହାର ପ୍ରଥମ ଭାଗଟି ଈଶ୍ୱରଙ୍କର ଅଧିକାର ଏବଂ ମନୁଷ୍ୟର ତାଙ୍କ ପ୍ରତି କର୍ତ୍ତବ୍ୟ ସମ୍ପର୍କରେ ନିୟମ ପ୍ରଦାନ କରେ ଏବଂ ଏହାର ଦ୍ୱିତୀୟ ଭାଗଟି ପ୍ରାଣୀମାନଙ୍କର ଅଧିକାର, ବିଶେଷତଃ ମାନବ ଅଧିକାର ଏବଂ ତାର ସୁରକ୍ଷା ସମ୍ବନ୍ଧୀୟ ନୀତି-ନିୟମ ପ୍ରଦାନ କରେ ।



## ଧର୍ମର ସିଦ୍ଧାନ୍ତ ପରିବର୍ତ୍ତନଶୀଳ ନୁହେଁ

ସ୍ୱର୍ଗୀୟ ଧର୍ମର ସିଦ୍ଧାନ୍ତ କୌଣସି ଯୁଗରେ ବଦଳି ନାହିଁ । ଏକ ଈଶ୍ୱରଙ୍କର ଉପାସନା କରିବା, ପ୍ରାଣୀର ମଙ୍ଗଳ କରିବା, କାହାରି ଅଯଥା କ୍ଷତି ନ କରିବା ଏବଂ ନିଜକୁ ଆପଣା କର୍ମ ପାଇଁ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ ମନେ କରି ଈଶ୍ୱରଙ୍କର ସେହି ନିୟମ ଅନୁସାରେ ଜୀବନ ନିର୍ବାହ କରିବା ଯାହା ସେ ନିଜ ଧର୍ମଦୂତ ଏବଂ ଧର୍ମଗ୍ରନ୍ଥ ମାଧ୍ୟମରେ ପ୍ରଦାନ କରନ୍ତି - ଏହାହିଁ ଯୁଗେ ଯୁଗେ ଧର୍ମର ଅପରିବର୍ତ୍ତନୀୟ ମୌଳିକ ସିଦ୍ଧାନ୍ତ ରହି ଆସିଛି । ଯେଉଁମାନେ ନିଜ ସମୟର ଧର୍ମପ୍ରବର୍ତ୍ତକ (Prophets) ଙ୍କ ଦ୍ୱାରା ଉପସ୍ଥାପିତ ଏହି ଜୀବନମାର୍ଗକୁ ଗ୍ରହଣ କରନ୍ତି ଏବଂ ଇଚ୍ଛା,

କାମନା, ପ୍ରଚଳିତ ପ୍ରଥା ଓ ପରମ୍ପରା ଆଦିକୁ ତ୍ୟାଗ କରି ଏହାର ଅନୁପାଳନ କରନ୍ତି, ସେମାନେ ଯେଉଁ ଯୁଗର ମନୁଷ୍ୟ ହୁଅନ୍ତୁ, ଯେଉଁ ଦେଶର ହୁଅନ୍ତୁ, ଯେଉଁ ଭାଷାଭାଷୀ ହୁଅନ୍ତୁ - ଅବଶ୍ୟ ଧାର୍ମିକ ଏବଂ ପରମେଶ୍ୱରଙ୍କର ''ଆଜ୍ଞାଧୀନ'', ଯାହାର ଆରବୀ ଅନୁବାଦ **''ମୁସଲିମ୍''** । ନିଜ ଈଶ୍ୱରଙ୍କ ନିକଟରେ ଏହି ସମର୍ପଣର ଭାବନା ତଥା ଆଜ୍ଞାବହତାର ଆରବୀ ଅନୁବାଦ **''ଇସଲାମ୍''** । ଏହା ଏକ ଆଦି ଧର୍ମ ଏବଂ ଏହି ସାଶ୍ୱତ ଧର୍ମର ଶିକ୍ଷା ହଜାର ହଜାର ବର୍ଷ ଧରି ଧରାପୃଷ୍ଠର ବିଭିନ୍ନ କୋଣରେ ଈଶ୍ୱରଙ୍କ ଦ୍ୱାରା ନିଯୁକ୍ତ ଅବତାର ବା ମୁନିଋଷି ମାନେ ମାନବ ପରିବାରକୁ ଦେଇ ଆସିଛନ୍ତି ।

## ଧର୍ମରେ ଈଶ୍ୱର ବିଶ୍ୱାସ

ଈଶ୍ୱର ବିଶ୍ୱାସ ହିଁ ଧର୍ମର ମୂଳାଧାର । ଏହାରି ଉପରେ ହିଁ ଧର୍ମର ସଂପୂର୍ଣ୍ଣ ଅଟ୍ଟାଳିକା ଛିଡ଼ା ହୋଇଛି । ଏହି ବିଶ୍ୱାସହିଁ ମନୁଷ୍ୟକୁ ସତକର୍ମ କରିବାର ପ୍ରେରଣା ଦିଏ, ଅସତମାର୍ଗରୁ ନିବୃତ୍ତ ରଖେ ଏବଂ ତାକୁ ଧର୍ମନିଷ୍ଠ କରି ଗଢ଼ିତୋଳେ ।

କିନ୍ତୁ ଆମେ ଦେଖୁ ଯେ ମାନବ ସମାଜରେ ଈଶ୍ୱରଙ୍କ ବିଷୟରେ ବିଭିନ୍ନ ମତବାଦ ରହିଛି । କିଏ କହେ - ଏ ବିଶ୍ୱ ବ୍ରହ୍ମାଣ୍ଡ ଆପେ ସୃଷ୍ଟି ହେଲା, ଆପେ ଆପେ କାର୍ଯ୍ୟରତ ଏବଂ ଆପେ ଧ୍ୱଂସ ହୋଇଯିବ - ସବୁ କିଛି ଅଟୋମେଟିକ୍ । କିଏ କହେ ''ଈଶ୍ୱର ଏକ'' ତ ଆଉ କିଏ କହେ ''ସେ ଅନେକ'' । କିଏ ପୁଣି କହେ ''ସେ ଏକରେ ଅନେକ - ଅନେକରେ ଏକ'' । କେହି ସୃଷ୍ଟିର ବିଭିନ୍ନ ବସ୍ତୁକୁ ଈଶ୍ୱର ମନେ କରେ - ବିଭିନ୍ନ ଜୀବ-ଜଡ଼କୁ ଈଶ୍ୱର ବୋଲି ବିଶ୍ୱାସ କରେ । ଆଉ କେହି କହେ ''କର୍ମ ହି ଭଗବାନ'' । ଅସଂଖ୍ୟ ମତବାଦର ଚକ୍ରବ୍ୟୂହ ମଧ୍ୟରେ ଈଶ୍ୱରଙ୍କ ସଂଜ୍ଞାଟି ସାଧାରଣ ମନୁଷ୍ୟଟି ପାଇଁ ଏକ ଅବୋଧ ରହସ୍ୟ ହୋଇ ରହିଯାଇଛି ।

ଏ ସଂସାର ଏକ ବିଶାଳ କର୍ମଭୂମୀ ଯେଉଁଠି ମନୁଷ୍ୟର ସାଧୁତା, ସତ୍ୟବାଦିତା,

ସଂଯମତା, ନୈତିକତା, ଦାନଶୀଳତା, ଦୟା ପରାୟଣତା, ବୁଦ୍ଧିମତା ଏବଂ ନ୍ୟାୟ ପରାୟଣତା ଆଦି କର୍ମର ପରୀକ୍ଷା ନିଆଯାଏ । କିନ୍ତୁ ସର୍ବପ୍ରଥମ ପରୀକ୍ଷାଟି ତା' ବୁଦ୍ଧି ଓ ବିବେକର ନିଆଯାଏ - ତାର ନ୍ୟାୟ ପରାୟଣତା ଏବଂ ବିଚାରଶକ୍ତିର ନିଆଯାଏ । ପ୍ରଥମେ ଈଶ୍ୱର ଏହା ଦେଖନ୍ତି ଯେ ତାଙ୍କ ଦ୍ୱାରା ସୃଷ୍ଟ ସଂସାରର ଶ୍ରେଷ୍ଠ ଜୀବ - ମାନବ, ଯାହାକୁ ବୁଦ୍ଧି ଓ ବିବେକ ପ୍ରଦାନ କରାଯାଇଛି ଏବଂ ତା' ଅନ୍ତରରେ ଈଶ୍ୱରଙ୍କ ସତ୍ତାକୁ ଉପଲବ୍ଧି କରିବାର ସାମର୍ଥ୍ୟ ରଖାଯାଇଛି, ସେ ନିଜ ପ୍ରଭୁଙ୍କୁ ଚିହ୍ନି ପାରୁଛି ନା ନାହିଁ । ନିଜ ବୁଦ୍ଧି ଏବଂ ବିଚାର ଶକ୍ତିର ପ୍ରୟୋଗ କରି ସେ ସ୍ରଷ୍ଟା ଏବଂ ସୃଷ୍ଟି ମଧ୍ୟରେ ପ୍ରଭେଦ କରିପାରୁଛି ନା ନାହିଁ । ଯେଉଁ ମଣିଷଟି ନିଜ ସ୍ରଷ୍ଟାଙ୍କୁ ଚିହ୍ନିବାରେ ଭୁଲ କରେ, ସେ ତାଙ୍କର ଉପାସନା କ'ଣ କରିବ ? ଯେଉଁ ଦାସ ନିଜ ପ୍ରଭୁଙ୍କୁ ଚିହ୍ନି ନପାରେ ସେ ବା ତାଙ୍କର ସେବା କିପରି କରିବ ? ଯେଉଁ ପତ୍ନୀ ନିଜ ସ୍ୱାମୀ ଏବଂ ପରପୁରୁଷ ମଧ୍ୟରେ ପ୍ରଭେଦ କରି ନପାରେ ସେ ଅନ୍ୟର ସେବା ଅବଶ୍ୟ କରିବ ।

ଏଣୁ ଆସନ୍ତୁ ଆମେ ଆମ ଈଶ୍ୱରଙ୍କୁ ଜାଣିବା । ତାଙ୍କ ଦିବ୍ୟ ଗୁଣାବଳୀ ଏବଂ ମାହାତ୍ମ୍ୟ ବିଷୟରେ, ତାଙ୍କ ଅନନ୍ତ ଶକ୍ତି ଓ ସାମର୍ଥ୍ୟ ବିଷୟରେ ତଥା ତାଙ୍କର ମନୁଷ୍ୟ ଉପରେ ଥିବା ଅଧିକାର ବିଷୟରେ କିଛି ଜ୍ଞାନଲାଭ କରିବା । କିନ୍ତୁ କୌଣସି କାଳ୍ପନିକ କାହାଣୀ ବା ବଂଶ ପରମ୍ପରା ସୂତରୁ ନୁହେଁ, ବରଂ ଯୁକ୍ତିଯୁକ୍ତ ପ୍ରମାଣକୁ ଆଧାର କରି ଜାଣିବା । ନିର୍ମଳ ହୃଦୟ ନେଇ ସତ୍ୟର ଅନ୍ୱେଷଣ କଲେ ଅବଶ୍ୟ ଈଶ୍ୱର ସହାୟତା କରନ୍ତି ।

# ଆମ ଈଶ୍ୱର ଏବଂ ତାଙ୍କର ଅସ୍ତିତ୍ୱ

କେତେକ ଲୋକ କହନ୍ତି ଯେ ଏ ସଂସାରରେ ଈଶ୍ୱର ବୋଲି କେହି ନାହାନ୍ତି । ସମଗ୍ର ଜଗତ ଆପେ ଆପେ ସୃଷ୍ଟି ହେଲା, ଆପେ ଆପେ କାର୍ଯ୍ୟରତ ଏବଂ ଆପେ ଧ୍ୱଂସ ପାଇଯିବ । ସବୁ କିଛି ଆକସ୍ମିକ ମାତ୍ର ।

ଯଦି କେହି ଆମକୁ କହେ ଯେ ଆମ ଘର କିମ୍ବା ଘରର ଆସବାବ ପତ୍ର ଆପେ ଆପେ ନିର୍ମିତ ହୋଇଛି, କ'ଣ ଆମେ ଏହା ସ୍ୱୀକାର କରି ନେବା ? ଯଦି କେହି କହେ ଯେ କୌଣସି ଏକ କାରଖାନା ଆପେ ଆପେ ଗଢ଼ି ଉଠିଛି, ଆପେ ଆପେ କାର୍ଯ୍ୟ କରୁଛି ଏବଂ ତା ଭିତରୁ ଭଳିକି ଭଳି ଆକୃତିର ଦ୍ରବ୍ୟ ସବୁ ପ୍ରସ୍ତୁତ ହୋଇ ଆପେ ବାହାରି ପଡୁଛି, ଅଥଚ୍ କାରଖାନାଟିର ନିର୍ମାତା କିମ୍ବା ସଂଚାଳକ କେହି ନାହାନ୍ତି, କ'ଣ ଆମେ ଏହା ବିଶ୍ୱାସ କରି ପାରିବା ?

ଏହି ବିଶାଳ ବ୍ରହ୍ମାଣ୍ଡ ବିଷୟରେ ଚ଼ିନ୍ତା କଲେ ସ୍ୱୀକାର କରିବାକୁ ପଡ଼େ ଯେ ଏହାର ପ୍ରତିଟି ରଚ଼ନା ଅତି ନିଖୁଣ ଏବଂ ପ୍ରତିଟି ବ୍ୟବସ୍ଥା ଅତ୍ୟନ୍ତ ବିସ୍ମୟକର । କୌଣସିଟିରେ ଟିକିଏ ହେଲେ ଅସନ୍ତୁଳନ କିମ୍ବା ବିଶୃଙ୍ଖଳା ଦେଖିବାକୁ ମିଳେ ନାହିଁ । ଜଳ, ସ୍ଥଳ, ଆକାଶ ତଥା ସୂର୍ଯ୍ୟ ଚ଼ନ୍ଦ୍ର ନକ୍ଷତ୍ର ଆଦି ପରସ୍ପର ମିଳିମିଶି ଶୃଙ୍ଖଳିତ ଭାବରେ ନିଜ ନିଜ କର୍ତ୍ତବ୍ୟ କରିଚାଲିଛନ୍ତି । ଯେଉଁ ପୃଥିବୀରେ ଆମେ ବାସ କରୁ, ଏହା ନିଜ ଅକ୍ଷ ଚାରିପଟେ ଘଣ୍ଟାକୁ ୧୦୦୦ ମାଇଲ ବେଗରେ ନଟୁ ପରି ଘୁରୁଛି । ଯଦି ପୃଥିବୀର ଏହି ଗତି ଘଣ୍ଟା ପ୍ରତି ୧୦୦ ମାଇଲ ହୋଇଥାଆନ୍ତା ତେବେ ଆମ ଦିନ ଓ ରାତି ବର୍ତ୍ତମାନର ଦିନ ରାତି ଅପେକ୍ଷା ୧୦ ଗୁଣ ଦୀର୍ଘ ହୁଅନ୍ତା । ଏବଂ କ୍ରମାଗତ ୧୦୦ ଘଣ୍ଟାର ସୂର୍ଯ୍ୟତାପ ସମସ୍ତ ବୃକ୍ଷଲତା ଗୁଡ଼ିକୁ ପୋଡ଼ି ପାଉଁଶ କରିଦିଅନ୍ତା । ଧରାପୃଷ୍ଠରେ ଜୀବ-ଜଗତ ବଞ୍ଚିବା ସଂଭବ ହୁଅନ୍ତା ନାହିଁ ।

ସୂର୍ଯ୍ୟ ଆମଠାରୁ ୧୪ କୋଟି ୯୬ ଲକ୍ଷ କିଲୋମିଟର ଦୂରରେ ରହିଛି । ଏହାର ଉପରି ଭାଗର ତାପମାତ୍ରା ୬୦୦୦ ଡ଼ିଗ୍ରୀ ସେଣ୍ଟିଗ୍ରେଡ଼ ଯାହା ବଡ଼ ବଡ଼ ପାହାଡ଼କୁ ମଧ୍ୟ ପୋଡ଼ି ପାଉଁଶ କରିଦେଇପାରେ । କିନ୍ତୁ ସୁର୍ଯ୍ୟ ପୃଥିବୀ ଠାରୁ ଏମିତି ଏକ ସଂତୁଳିତ ବ୍ୟବଧାନ ରକ୍ଷା କରି ଚାଲିଛି ଯାହା ଫଳରେ ଆମକୁ ଆବଶ୍ୟକତା ଠାରୁ ଅଧିକ ଉତ୍ତାପ ପହଁଚେ ନାହିଁ । ଯଦି ପୃଥିବୀ ଠାରୁ ସୂର୍ଯ୍ୟର ବ୍ୟବଧାନ ଦୁଇଗୁଣ ହୋଇଯାଏ, ତେବେ ଭୂପୃଷ୍ଠରେ ଏତେ ଥଣ୍ଡା ଅନୁଭୂତ ହେବ ଯେ ସମସ୍ତ ଜୀବ ଜଗତ ବରଫ ପାଲଟି ଯିବେ । ଆଉ ଯଦି ଏହି ଦୂରତା ବର୍ତ୍ତମାନ ଦୂରତାର ଅଧା ହୋଇଯାଏ, ତେବେ ଏତେ ଉତ୍ତାପ ସୃଷ୍ଟି ହେବ ଯେ ଜୀବ-ଜଗତ ପୋଡ଼ି ପାଉଁଶ ହୋଇଯିବ । ଚନ୍ଦ୍ର ଆମଠାରୁ ୩ଲକ୍ଷ ୮୫ ହଜାର କିଲୋମିଟର ଦୂରରେ ରହିଛି । ଯଦି ଏହି ବ୍ୟବଧାନ ଅଧା ହୋଇଯାଏ ତେବେ ସମୁଦ୍ର ଗୁଡ଼ିକରେ ଏତେ ଉଚ୍ଚ ଉଚ୍ଚ ଜୁଆର ଉଠିବ ଯାହା ସମଗ୍ର ସ୍ଥଳଭାଗକୁ ଜଳଭଗ୍ନ କରି ଦେବ ।

ବିଶ୍ୱ ବ୍ୟବସ୍ଥାର ଏହି ସାଧାରଣ ଘଟଣା ଗୁଡ଼ିକ ଦେଖିଲେ ସ୍ୱୀକାର କରିବାକୁ ପଡ଼େ ଯେ ମନୁଷ୍ୟକୁ ଧରା ପୃଷ୍ଠରେ ଜୀବିତ ରଖିବା ପାଇଁ ଏକ ସୁଦୃଢ଼ ଓ ସୁସଂଗଠିତ ବ୍ୟବସ୍ଥା କାର୍ଯ୍ୟରତ । ଏତେ ଗୁଡ଼ିଏ ବୃହଦ୍ ଶକ୍ତିଙ୍କର ପରସ୍ପର ସହଯୋଗରେ କାର୍ଯ୍ୟ କରିବା ଆଦୌ କୌଣସି ଆକସ୍ମିକତା ହୋଇ ନପାରେ କିମ୍ୱା କୌଣସି ଆକସ୍ମିକତା ଏତେ ଗୁଡ଼ିଏ ଶକ୍ତିମାନଙ୍କୁ ଆଶ୍ଚର୍ଯ୍ୟଜନକ ଶୃଙ୍ଖଳାର ସହିତ ବର୍ଷ ବର୍ଷ ଧରି କାର୍ଯ୍ୟକ୍ଷମ କରାଇବାରେ ସମର୍ଥ ହୋଇ ନପାରେ । ମହାକାଶରେ ଘୁରୁଥିବା ଗୋଟିଏ ମାତ୍ର ଗ୍ରହର କକ୍ଷଚ୍ୟୁତି ସଂସାରକୁ ଧ୍ୱଂସ କରିଦେବା ପାଇଁ ଯଥେଷ୍ଟ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ସମଗ୍ର ବ୍ରହ୍ମାଣ୍ଡର ପ୍ରତ୍ୟେକଟି ସୃଷ୍ଟି ଜଣେ ଅଦୃଶ୍ୟ ମହାଶକ୍ତିଙ୍କ ଦ୍ୱାରା ନିୟନ୍ତ୍ରିତ ।

ଚାରୋଟି ମାଙ୍କଡ଼ ଯଦି ଗୋଟିଏ ଟାଇପ ମେସିନ୍ ଧରି ବସି ପଡ଼ନ୍ତି ଏବଂ ସେଥିରେ ବର୍ଷ ବର୍ଷ ଧରି ମନଇଚ୍ଛା ପିଟି ଚାଲନ୍ତି, ସେମାନଙ୍କ ଦ୍ୱାରା ଟାଇପ କରାଯାଇଥିବା କାଗଜ ଗଦା ମଧ୍ୟରୁ ଆକସ୍ମିକ ଭାବରେ କବି ରାଧାନାଥ ରାୟଙ୍କ

କବିତାଟିଏ ବାହାରି ପଡ଼ିବା ଯେମିତି ସଂଭବ ନୁହେଁ, ଠିକ୍ ସେହିପରି ଆକସ୍ମିକ ଭାବରେ ସଂସାରର ରଚନା ପୁଣି ଅବିଚ୍ଛିନ୍ନ ଭାବରେ ଯୁଗ ଯୁଗ ଧରି ଏହାର ସୃଶୃଙ୍ଖଳିତ ସଂଞ୍ଚାଳନା କଦାପି ସମ୍ଭବ ନୁହେଁ ।

ବୁଢ଼ୀଟିଏ ଦାଣ୍ଡପିଣ୍ଡାରେ ବସି ଅରଟରେ ସୂତା କାଟୁ ଥାଏ । ବାଟୋଇ ଜଣେ ତାକୁ ପଚାରିଲେ -

''ମାଉସୀ, ତୁମେ କଣ ଏକଥା ବିଶ୍ୱାସ କର ଯେ ଈଶ୍ୱର ଅଛନ୍ତି ଏବଂ ଏ ସଂସାରକୁ ସେଇ ହିଁ ଚ଼ଳାଉଛନ୍ତି ?''

ବୁଢ଼ୀ ଉତ୍ତର ଦେଲା - ''ନିଶ୍ଚୟ''

ବାଟୋଇ ପ୍ରଶ୍ନ କଲେ - ''ତୁମେ କିପରି ଏହା ପ୍ରମାଣ କରିପାରିବ ?''

ଏଥର ବୁଢ଼ୀଟି ଅରଟ ଛାଡ଼ି ବସିପଡ଼ିଲା । ତାପରେ ବାଟୋଇକୁ ଚାହିଁ ପଚାରିଲା - ''ବାପା, ମୋତେ ଟିକେ କହ, ଏ ଅରଟଟି କାହିଁକି ଚାଲୁ ନାହିଁ ?''

''ଭଲ କଥା, ତମେ ତ ଚ଼ଲେଇବା ବନ୍ଦ କରି ଦେଲ, ଆଉ ଚାଲନ୍ତା କିପରି ?'' ବାଟୋଇ କହିଲେ ।

ବୁଢ଼ୀ ଅଳ୍ପ ହସି କହିଲା - ''ବାପା, ଯଦି ଏଇ ଛୋଟ ଅରଟଟି ନ ଚ଼ଳାଇଲେ ଚାଲୁ ନାହିଁ, ତେବେ ଏ ବିଶାଳ ସଂସାର ଆପେ ଆପେ କିପରି ଚାଲି ପାରିବ ?''

ବାଟୋଇ ବୁଢ଼ୀ ଉତ୍ତରରେ ସଂତୁଷ୍ଟ ହୋଇଗଲେ ।

# ଈଶ୍ୱରଙ୍କୁ ଚିହ୍ନିବା କିପରି ?

କିଛି ଲୋକ କହନ୍ତି ‘‘ଆମେ ତ ଈଶ୍ୱରଙ୍କୁ ଦେଖି ପାରୁ ନାହୁଁ, ତାଙ୍କୁ ମାନିବୁ କିପରି ?’’

କୌଣସି ବସ୍ତୁର ଅସ୍ତିତ୍ୱ ତା’ର ଦୃଶ୍ୟ ହେବା କିମ୍ବା ନହେବା ଉପରେ ନିର୍ଭର କରି ନଥାଏ । ଅନେକ ପଦାର୍ଥ ଆମକୁ ଦୃଷ୍ଟିଗୋଚର ହୁଏ ନାହିଁ କିନ୍ତୁ ସମସ୍ତେ ସେଗୁଡ଼ିକର ଅସ୍ତିତ୍ୱ ଅନୁଭବ କରନ୍ତି । ଯଥା - ସୁଗନ୍ଧ, ପବନ ଏବଂ ଆତ୍ମା ଆଦି ଦୃଶ୍ୟ ହୁଏ ନାହିଁ, କିନ୍ତୁ ସମସ୍ତେ ଏହାକୁ ସ୍ୱୀକାର କରନ୍ତି । ଗାଁ ଦାଣ୍ଡରେ ସାପଟିଏ ଚାଲିଗଲେ ତା ଚିହ୍ନ ମାଟି ଉପରେ ରହିଯାଏ । ସାପକୁ ନ ଦେଖି କେବଳ ତା’ ଯିବା ଚିହ୍ନଟିକୁ ଦେଖି ଆମେ ଅନାୟସରେ କହିଦେଉ ଯେ ସାପଟିଏ ଏହି ବାଟେ ଯାଇଛି । ସେହିପରି ରାସ୍ତାରେ ଗାଈର ଗୋବର ପଡ଼ିଥିବା ଦେଖି ଗାଈଟି ସେହି ବାଟେ ଯାଇଛି ବୋଲି ମାନି ନିଆଯାଏ, କାରଣ କୌଣସି ବସ୍ତୁର ନିଦର୍ଶନ ତାର ଅସ୍ତିତ୍ୱ ବିଷୟରେ ସୂଚନା ପ୍ରଦାନ କରିଥାଏ । ପୋଲିସ ଏବଂ ଡ଼ିଟେକ୍ଟିଭ୍ ମାନେ ଏହି ସୂତ୍ରର ପ୍ରୟୋଗ କରି ଅପରାଧୀକୁ ଠାବ କରନ୍ତି ।

କୌଣସି ନିର୍ମାଣ କାର୍ଯ୍ୟ ମଧ୍ୟ ନିର୍ମାତାର ଅସ୍ତିତ୍ୱ ପ୍ରତିପାଦନ କରେ । ସେହିପରି ଏ ସୁନ୍ଦର ସଂସାରର ରଚନା ଏବଂ ପରିଚାଳନା ଏହାର ରଚୟିତା ଏବଂ ସଂଚାଳକର ଅସ୍ତିତ୍ୱ ପ୍ରତିପାଦନ କରେ ।

# ବ୍ରହ୍ମାଣ୍ଡରେ ଜଣେ ହିଁ ଈଶ୍ୱର

ବିଶ୍ୱ ବ୍ରହ୍ମାଣ୍ଡର କୌଣସି କ୍ଷେତ୍ରରେ ସାମାନ୍ୟତମ ଅବ୍ୟବସ୍ଥା ଦେଖାଯାଏ ନାହିଁ । ପ୍ରତ୍ୟେକ ବ୍ୟବସ୍ଥାରେ ଏକ ଅଦ୍ଭୁତ ସଂତୁଳନ ଓ ଶୃଙ୍ଖଳା ରହିଛି ।

ଚନ୍ଦ୍ର-ତାରା କର୍ତ୍ତବ୍ୟରେ ହେଳା କରନ୍ତି ନାହିଁ, ସୂର୍ଯ୍ୟ ବିଳମ୍ବିତ ହୁଏ ନାହିଁ, ସାଗର ସୀମା ଲଙ୍ଘେ ନାହିଁ, ଗ୍ରହ କକ୍ଷଚ୍ୟୁତ ହୁଅନ୍ତି ନାହିଁ, ସୂର୍ଯ୍ୟ, ଚନ୍ଦ୍ର, ଜଳ ବାୟୁ ଆଦି ମିଳିମିଶି ଯୁଗ ଯୁଗ ଧରି କାର୍ଯ୍ୟରତ, କିନ୍ତୁ ସେମାନଙ୍କ ମଧ୍ୟରେ ସଂଘର୍ଷ ଘଟେ ନାହିଁ । ଏଭଳି ବିରଳ ବ୍ୟବସ୍ଥା କେବଳ ଗୋଟିଏ ପରିସ୍ଥିତିରେ ସଂଭବ ହୋଇପାରେ, ଯେଉଁଠି ସମଗ୍ର ବାହିନୀ ମାତ୍ର ଜଣଙ୍କର ଆଦେଶରେ ପରିଚାଳିତ । କୌଣସି ସୈନ୍ୟ ବାହିନୀରେ ଏକାଧିକ ସେନାଧ୍ୟକ୍ଷ ରହିଲେ ସେଥିରେ ବିଶୃଙ୍ଖଳା ସୃଷ୍ଟି ହେବ, କୌଣସି ଦେଶରେ ଦୁଇ ଜଣ 'ରାଜା' ରହିଲେ ସେ ରାଜ୍ୟ ନାଶ ହେବ ଏବଂ କୌଣସି ପରିବାରରେ ଏକାଧିକ ମୁରବୀ ହେଲେ ସେ ପରିବାର ନଷ୍ଟ ହୋଇଯିବ । ତେବେ ଏ ବିଶାଳ ବିଶ୍ୱ-ବ୍ୟବସ୍ଥା ସମାନ ଶକ୍ତି ଓ କ୍ଷମତା ରଖିଥିବା ଏକାଧିକ ମାଲିକଙ୍କର ଉପସ୍ଥିତିରେ କିପରି ଶୃଙ୍ଖଳିତ ରହିପାରନ୍ତା ? ପ୍ରତ୍ୟେକ ଯୁଗରେ ମନୁଷ୍ୟ ସମାଜକୁ ଏହି ଧ୍ରୁବ ସତ୍ୟଟି ବିଷୟରେ ଅବଗତ କରାଯାଇଛି, ଅର୍ଥାତ୍ - ବିଶ୍ୱ ବ୍ରହ୍ମାଣ୍ଡରେ ଜଣେ ହିଁ ଈଶ୍ୱର ବିଦ୍ୟମାନ ।

# ବିଭିନ୍ନ ଧର୍ମରେ ଏକେଶ୍ୱରବାଦ

ହିନ୍ଦୁ ଧର୍ମର ମୂଳମନ୍ତ୍ର ହେଉଛି **ବ୍ରହ୍ମସୂତ୍ର** :-

**'एकम ब्रह्म द्वितीय नास्ते, नेह, ना, नास्ते, किन्चन'**

(ଏକମ୍ ବ୍ରହ୍ମ, ଦ୍ୱିତୀୟ ନାସ୍ତେ, ନେହ ନା, ନାସ୍ତେ କିଂଚ଼ନ୍)

ଓଡ଼ିଆରେ ଏହାର ଅର୍ଥ ହେଉଛି - ''ଏକମାତ୍ର ପରମେଶ୍ୱର ଅଛନ୍ତି, ଦ୍ୱିତୀୟ କେହି ନାହାନ୍ତି, ଟିକିଏ ମଧ୍ୟ ନାହାନ୍ତି ।''

ଏହି ବ୍ରହ୍ମସୂତ୍ର ହିଁ ବେଦର ସାର ଏବଂ ଧର୍ମର ଆଧାର ।



ଯଦି ଆମେ ଏହାକୁ ଇଂରାଜୀରେ ଅନୁବାଦ କରିବା, ଏହାର ଅର୍ଥ ହେବ -

"There is only one God, not the second, not at all, not in the least bit."

ଯଦି ଆମେ ଏହାକୁ ଆରବୀ ଭାଷାରେ ପଢ଼ିବା ତେବେ ଏହା ହେବ :-

[illegible]

**ଲା'ଇଲାହା ଇଲ୍ଲାହ**

ଏହାହିଁ ଆଦି ଧର୍ମ ଇସଲାମର ମୂଳ ମନ୍ତ୍ର ।

ବେଦାନ୍ତରେ ପରମେଶ୍ୱରଙ୍କୁ କୁହାଯାଇଛି -

## 'एकोमेब द्वितीयम'

(ଏକମେବ ଦ୍ୱିତୀୟମ)

(Chandogya Upanisad, Adhyaya No. 6, Section No.2, Sloka No.1)

ଅର୍ଥାତ୍ ପରମେଶ୍ୱର ଏକ ଏବଂ ଅଦ୍ୱିତୀୟ ଅଟନ୍ତି ।

ଋଗ ବେଦରେ ଉଲ୍ଲେଖ ଅଛି :-

**ଭାବାର୍ଥ :-** "ପରମେଶ୍ୱରଙ୍କ ଉପାସନା ବିନା କୌଣସି ମନୁଷ୍ୟର ବିଜ୍ଞାନ ବା ପବିତ୍ରତା ସମ୍ଭବ ହୋଇପାରେ ନାହିଁ । ଏଣୁ ସବୁ ମନୁଷ୍ୟ ଏକ ପରମେଶ୍ୱରଙ୍କର କେବଳ ଉପାସନା କରିବା ଉଚିତ୍ । ୬ ।"

( Rig Ved Part - 1, Adhyaya - 4, Sukta - 50, Sloka 6 )

ଖ୍ରୀଷ୍ଟୀୟାନ ଧର୍ମଗ୍ରନ୍ଥ ବାଇବେଲରେ ଉଲ୍ଲେଖ ଅଛି ଯେ ଯୀଶୁଖ୍ରୀଷ୍ଟଙ୍କୁ ପ୍ରଶ୍ନ କରାଗଲା ଯେ ଈଶ୍ୱରଙ୍କ ସମସ୍ତ ଆଜ୍ଞା ଗୁଡ଼ିକ ମଧ୍ୟରେ କେଉଁ ଆଜ୍ଞାଟି ସର୍ବପ୍ରଧାନ ? ମହାମାନ୍ୟ ଧର୍ମଦୂତ ଯୀଶୁ ଉତ୍ତର ଦେଲେ -

"Hear O Israel, the Lord, our God is one Lord."

( Book of Mark 12-29 )

"ପ୍ରଧାନ ଆଜ୍ଞା ଏହି, ହେ ଇସ୍ରାଏଲ ଶୁଣ, ପ୍ରଭୁ, ଆମମାନଙ୍କର ଈଶ୍ୱର ଏକମାତ୍ର ପ୍ରଭୁ ଅଟନ୍ତି ।"

ୟହୁଦୀ (Jews) ମାନଙ୍କ ଗ୍ରନ୍ଥ ବାଇବେଲର Old Testament ଏଥିରେ ଉଲ୍ଲେଖ ଅଛି ଯେ ଈଶ୍ୱର କହୁଛନ୍ତି -

"I, even I, am the Lord and apart from me there is no saviour."

''ଆମ୍ଭେ, ଆମ୍ଭେ ହିଁ ସଦାପ୍ରଭୁ ଅଟୁ ଓ ଆମ୍ଭ ଛଡ଼ା ଆଉ ତ୍ରାଣକର୍ତ୍ତା ନାହିଁ ।''

( Book of Isaiah Ch.43, Verse 11 )

ମୁସଲମାନ ଧର୍ମଗ୍ରନ୍ଥ କୁରଆନ ମଧ୍ୟ କହେ -



କହିଦିଅ ସେ ଅଲ୍ଲାହ୍ ଏକ ଅଟନ୍ତି ।

( Qur'an : 112-1 )

ଆପଣ ଦେଖିଲେ ଯେ ପୃଥିବୀର ଚାରିଗୋଟି ବୃହତ ଧର୍ମର ସର୍ବୋଚ୍ଚ ଗ୍ରନ୍ଥ 'ଈଶ୍ୱର ଏକ' ବୋଲି ଘୋଷଣା କରୁଛନ୍ତି, ଏହାକୁ ଆରବୀ ଭାଷାରେ **'ତୌହିଦ୍'** ଏବଂ ଓଡ଼ିଆରେ **'ଏକେଶ୍ୱରବାଦ'** କୁହାଯାଏ । କିନ୍ତୁ ଏକେଶ୍ୱରବାଦର ପ୍ରକୃତ ଅର୍ଥ କ'ଣ ?



# ଏକେଶ୍ୱରବାଦର ଅର୍ଥ

'ଏକ ଈଶ୍ୱର'ର ଅର୍ଥ କେବଳ ଏତିକି ନୁହେଁ ଯେ ସଂସାରର ସ୍ରଷ୍ଟା ଓ ପାଳନ କର୍ତ୍ତା ଜଣେ, ବରଂ ଏହାର ଅର୍ଥ ହେଉଛି ଯେ ବିଶ୍ୱ ବ୍ରହ୍ମାଣ୍ଡର ରଚୟିତା, ଏଥିରେ ଥିବା ପ୍ରତ୍ୟେକଟି ଜୀବ-ଜଡ଼ର ଧାରଣ ଓ ପାଳନ କର୍ତ୍ତା, ସଭିଙ୍କର ତ୍ରାଣକର୍ତ୍ତା ଓ ତତ୍ତ୍ୱାବଧାରକ ଏବଂ ସମସ୍ତଙ୍କର ସେବା-ଉପାସନାର ଅଧିକାରୀ କେବଳ ଏକ ପରମେଶ୍ୱର ଅଟନ୍ତି । ସେ ଅନୁପମ, ଅଜନ୍ମା ଏବଂ ଅମର । କେହି ତାଙ୍କ ସମତୁଲ୍ୟ ନୁହେଁ । ସେ ଅନାଦି, ଅନନ୍ତ ଏବଂ ନିରାକାର - ବିଶ୍ୱ ବ୍ରହ୍ମାଣ୍ଡର ଅଦ୍ୱିତୀୟ ଅଧୀଶ୍ୱର ।

ପୃଥିବୀର ଅଧିକାଂଶ ଲୋକ ଏକ ଈଶ୍ୱରରେ ବିଶ୍ୱାସ କରନ୍ତି ଏବଂ ତାଙ୍କୁ ହିଁ ସ୍ରଷ୍ଟା ଏବଂ ପାଳନକର୍ତ୍ତା ସ୍ୱୀକାର କରନ୍ତି, କିନ୍ତୁ ସେଇ ଈଶ୍ୱରଙ୍କୁ ଏକମାତ୍ର ତ୍ରାଣକର୍ତ୍ତା

ଏବଂ ଉପାସ୍ୟ ଭାବେ ଗ୍ରହଣ କରନ୍ତି ନାହିଁ । ସେମାନେ ଅନ୍ୟର ମଧ୍ୟ ସେବା ଉପାସନା କରନ୍ତି ଯିଏ ଈଶ୍ୱର ନୁହେଁ ।

ଆସନ୍ତୁ ଦେଖିବା ଏହି 'ଉପାସନା' ନାମକ କର୍ମଟି କ'ଣ, ଯାହାକୁ ଅଧିକାଂଶ ଲୋକେ ଏକ ଈଶ୍ୱର ବିଶ୍ୱାସ ରଖିବା ସତ୍ୱେ ଅନ୍ୟ ପାଇଁ କରନ୍ତି ।

# ଉପାସନା

ହର୍ତ୍ତା କର୍ତ୍ତା ବା ତ୍ରାଣକର୍ତ୍ତା ମନେ କରି କାହାରି ପୂଜାର୍ଚ୍ଚନା କରିବା ଏବଂ ତା'ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରିବାକୁ ''ଉପାସନା'' କୁହାଯାଏ । ଆସନ୍ତୁ, ଟିକିଏ ବିସ୍ତୃତ ଭାବରେ ଏହାର ଆଲୋଚ଼ନା କରିବା ।

ଆମେ ଜାଣୁ ଯେ ବସ୍ତ୍ର ମନୁଷ୍ୟର ଏକ ମୌଳିକ ଆବଶ୍ୟକତା । କିନ୍ତୁ ଏପରି ଅନେକ ଗ୍ରାମ ରହିଛି ଯେଉଁଠି ଗୋଟିଏ ବୋଲି ଲୁଗା ଦୋକାନ ନାହିଁ । ଔଷଧ ମଧ୍ୟ ଏକ ମୌଳିକ ଆବଶ୍ୟକତା, ଅଥଚ଼ ଅସଂଖ୍ୟ ଗ୍ରାମ ଦେଖିବାକୁ ମିଳେ ଯେଉଁଠି ଔଷଧ ଦୋକାନଟିଏ ନାହିଁ । ସେହି ପରି ବିଦ୍ୟାଳୟ ଏବଂ ଡ଼ାକ୍ତରଖାନା ସୁବିଧା ମଧ୍ୟ ଅନେକ ଜନ-ବସତିରେ ନାହିଁ । କିନ୍ତୁ - ଗୋଟିଏ ଜିନିଷ ପ୍ରତି ଗ୍ରାମ ଓ ସହରରେ, ଜଙ୍ଗଲ ମଧ୍ୟରେ ଏବଂ ପାହାଡ଼ ଉପରେ, ଏପରିକି ମନୁଷ୍ୟର ବାସଗୃହରେ ମଧ୍ୟ ଦେଖିବାକୁ ମିଳେ, ଆପଣ ଅନୁମାନ କରିପାରୁଛନ୍ତି ଏହା କ'ଣ ?

ଏହା ହେଉଛି ଉପାସନା ପୀଠ - ମନ୍ଦିର, ମସ୍‌ଜିଦ୍‌, ଗୀର୍ଜା ଏବଂ ଗୁରୁଦ୍ୱାର ।

ଯେଉଁଠାରେ କିଛି ଲୋକ ବାସ କରନ୍ତି, ସେଠାରେ ପୂଜାସ୍ଥଳଟିଏ ଅବଶ୍ୟ ଥିବ । ସତେ ଯେପରି ଲୋକେ କହିବାକୁ ଚାହାନ୍ତି ଯେ ଔଷଧ ଦୋକାନ ନଥିଲେ କାମ ଚ଼ଳିଯାଇପାରେ, ସ୍କୁଲ ବା ଡ଼ାକ୍ତରଖାନା ନଥିଲେ ମଧ୍ୟ ଚ଼ଳି ହେବ, କିନ୍ତୁ ''ଉପାସନା ପୀଠ'' ବ୍ୟତୀତ ଜୀବନଯାପନ କରିବା ସଂଭବ ନୁହେଁ । ମନୁଷ୍ୟର

ଏହି ଭାବନାରୁ ପ୍ରମାଣିତ ହୁଏ ଯେ ପୂଜା-ଉପାସନା ତା' ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ଏବଂ ଏକ ପ୍ରମୁଖ ଆବଶ୍ୟକତା । ମାନବ ଇତିହାସରେ ଦେଖିବାକୁ ମିଳେ ଯେ ମାନବ-ସମାଜ ଯୁଗେ ଯୁଗେ କୌଣସି ନା କୌଣସି ସତ୍ତାର ଉପାସନା କରି ଆସିଛି । ''ଉପାସନା''ର କାରଣ ସଂପର୍କରେ ଆପଣ କେବେ ଚିନ୍ତା କରିଛନ୍ତି ଯେ କାହିଁକି ମଣିଷ ପୂଜା-ଉପାସନା କରେ ?

ଏହାର କାରଣ ହେଲା ମନୁଷ୍ୟ ସଂସାରରେ ନିଜକୁ ଅତ୍ୟନ୍ତ ଦୁର୍ବଳ ଏବଂ ଅସହାୟ ମନେ କରେ । ସେ ଅନୁଭବ କରେ ଯେ ଜୀବନର ଏକ ବିଶାଳ ପରିସର ତା' ଆୟତ୍ତରେ ନାହିଁ । ସଫଳତା ପାଇଁ କଠୋର ପରିଶ୍ରମ କରି ମଧ୍ୟ ସେ ବିଫଳ ହୋଇଥାଏ । ଲାଭବାନ ହେବା ଆଶାରେ କରିଥିବା ବ୍ୟବସାୟଟି ତାକୁ କ୍ଷତିଗ୍ରସ୍ତ ମଧ୍ୟ କରାଇଥାଏ । ରୋଗ-ବ୍ୟାଧି ଓ ଦୁର୍ଘଟଣାରୁ ତାକୁ ମୁକ୍ତି ମିଳେ ନାହିଁ । ଶାନ୍ତିର କାମନା ତା'ର ପୂର୍ଣ୍ଣ ହୁଏ ନାହିଁ । ସେ ମୃତ୍ୟୁ ଚାହେଁ ନାହିଁ ଅଥଚ ମୃତ୍ୟୁ ତାକୁ ଛାଡ଼େ ନାହିଁ । ଅସୁମାରୀ ଅଭିଳାଷ ତା'ର ଅପୂର୍ଣ୍ଣ ରହିଯାଏ ।

କେବଳ ଏତିକି ନୁହେଁ, ଆହୁରି ଅନେକ ବିପଦର ତାକୁ ସମ୍ମୁଖୀନ ହେବାକୁ ପଡ଼େ । ବାତ୍ୟାର ତାଣ୍ଡବ ଦେଖି ତା'ହୃଦୟ ଥରି ଉଠେ । ବନ୍ୟାର ବିଭୀଷିକା ତାକୁ ଆତଙ୍କିତ କରେ । ଭୂମିକମ୍ପର ଧ୍ୱଂସଲୀଳା ତାକୁ ଭୟଭୀତ କରେ । ସମୁଦ୍ର ବକ୍ଷରେ ତା' ନୌକା ଟଳମଳ ହୁଏ । ଘଡ଼ଘଡ଼ି ଗର୍ଜନରେ ତା' ଛାତି ଦୋହଲି ଉଠେ । ରୋଗ ବ୍ୟାଧି ତାକୁ ବ୍ୟତିବ୍ୟସ୍ତ କରେ । ଦୁର୍ଘଟଣାରୁ ମଧ୍ୟ ସେ ସୁରକ୍ଷା ଚାହେଁ । ସମୁଦ୍ର ବକ୍ଷରେ ହେଉ କିମ୍ୱା ମହାକାଶରେ, କୁଟୀରରେ ହେଉ ବା ପ୍ରାସାଦରେ, ପ୍ରକୃତିର ଅସୁମାରୀ ବିପଦ ପ୍ରତି ମୁହୂର୍ତ୍ତରେ ଡ଼େମୋକ୍ଲିସ୍‌ଙ୍କ ଖଡ୍‌ଗ ଭଳି ତା' ଉପରେ ଝୁଲୁଥାଏ ।

ଏପରି ଅବସ୍ଥାରେ ବିଚରା ଅସହାୟ ମଣିଷଟି ଏକ ଅଦୃଶ୍ୟ ଶକ୍ତିର ସହାୟତା ଖୋଜେ ଯିଏ ତାକୁ ଆଶ୍ରୟ ଦିଅନ୍ତା, ବିପଦରୁ ଉଦ୍ଧାର କରନ୍ତା ଏବଂ ଇହଲୋକରେ ଶାନ୍ତି ଓ ପରଲୋକରେ ମୁକ୍ତି ପ୍ରଦାନ କରନ୍ତା । ବାସ୍ତବରେ କାର୍ଯ୍ୟସିଦ୍ଧିର ଏହି ଆବଶ୍ୟକତା ଏବଂ ମନୁଷ୍ୟର ଅସହାୟତାହିଁ ତାକୁ ପୂଜାର୍ଚ୍ଚନା ପାଇଁ ପ୍ରବର୍ତ୍ତାଇଥାଏ ।

ଏହି ଆବଶ୍ୟକତାର ପୂର୍ତ୍ତି ପାଇଁ ମନୁଷ୍ୟର ଦୃଷ୍ଟି ଯାହା ଉପରେ କେନ୍ଦ୍ରିଭୂତ ହୋଇଛି, ଯାହା ପ୍ରତି ସେ କିଛି ଭରସା କରିଛି, ତାକୁ 'ଉପାସ୍ୟ' ରୂପେ ଗ୍ରହଣ କରି ନେଇଛି ଏବଂ ତାକୁ ପ୍ରସନ୍ନ କରିବା ପାଇଁ ପୂଜା-ଆରାଧନା କରିଛି ।

ତାକୁ ହୃଦୟ-ସିଂହାସନରେ ଅଭିଷିକ୍ତ କରିଛି,
ସ୍ତୁତି ଗାନ କରି ତାର ବନ୍ଦନା କରିଛି,
ତା' ଧ୍ୟାନ-ଚିନ୍ତନରେ ନିଜକୁ ହଜାଇ ଦେଇଛି,
ହୃଦୟର ଶାନ୍ତି ପାଇଁ ତା' ନାମ ଜପ କରିଛି - ଭଜନ କୀର୍ତ୍ତନ କରିଛି,
ତାକୁ ପ୍ରଣାମ କରିଛି - ତା' ଚ଼ରଣରେ ମଥା ରଖି ଦେଇଛି,
ବିପଦରେ ଆକୁଳ ହୋଇ ତାକୁ ଡ଼ାକିଛି -
ପ୍ରାର୍ଥନା କରିଛି, ଗୁହାରୀ ଜଣାଇଛି,
ତା' ଶରଣାପନ୍ନ ହୋଇ ସାହାଯ୍ୟ ଭିକ୍ଷା କରିଛି,
ଉପାସ୍ୟର ପ୍ରସନ୍ନତା ପାଇଁ ନୈବେଦ୍ୟ ଅର୍ପଣ କରିଛି,
ପଶୁବଳୀ ଏବଂ ଦାନ-ଦକ୍ଷିଣା ଦେଇଛି,
ତା' ପାଇଁ ଉପବାସ ରହିଛି - ବ୍ରତ ପାଳନ କରିଛି,
ତା' ଉଦ୍ଦେଶ୍ୟରେ ତୀର୍ଥଯାତ୍ରା କରିଛି,
ମନସ୍କାମନା ପୂରଣ ପାଇଁ ତା ନିକଟରେ ମାନସିକ କରିଛି,
ତା' ସାନ୍ନିଧ୍ୟ ଲାଭ ପାଇଁ ଘର ସଂସାର ତ୍ୟାଗ କରିଛି,
ଅରଣ୍ୟ ଓ ପାହାଡ଼ରେ ବସି ତପସ୍ୟା କରିଛି,
ତା' ଆଜ୍ଞା ପାଳନ ପାଇଁ କଠୋର ସାଧନା କରିଛି,
ତା' ପାଇଁ ବହୁ ସଂଘର୍ଷ କରିଛି ଏବଂ
ନିଜ ପ୍ରାଣ ମଧ୍ୟ ଉତ୍ସର୍ଗ କରି ଦେଇଛି ।

ମନୁଷ୍ୟର ଏ ସମସ୍ତ ଆଚ଼ରଣ ଗୁଡ଼ିକ ''ଉପାସନା''ର ଅନ୍ତର୍ଭୁକ୍ତ । ଆରବୀ ଭାଷାରେ ଏଗୁଡ଼ିକୁ **'ଇବାଦତ'** କୁହାଯାଏ ଏବଂ ଏହା ଏକ ପରମେଶ୍ୱର ଅଲ୍ଲାହ୍‌ଙ୍କର ଅଧିକାର । ତାଙ୍କର ଆହୁରି ଅନେକ ସୁନ୍ଦର ନାମ ରହିଛି, ଯାହା ବିଷୟରେ ଆମେ ପରବର୍ତ୍ତୀ ଅଧ୍ୟାୟରେ ଆଲୋଚନା କରିବା ।

ଉପାସକ ନିଜ ଉପାସ୍ୟର ପ୍ରସନ୍ନତା ପାଇଁ ଯାହା ସବୁ କରେ, ତାହା 'ଉପାସନା' । ଏହାହିଁ ଉପାସନାର ପରିଭାଷା । ବୋଧହୁଏ ଏପରି କୌଣସି ବ୍ୟକ୍ତି ନାହିଁ ଯିଏ ନିଜ ଜୀବଦଶାରେ କାହାରି ମଧ୍ୟ ଉପାସନା କରିନାହିଁ । କିଛି ନହେଲେ ମଧ୍ୟ ଅନ୍ତତଃ ବିପଦରେ ତା' ହୃଦୟ କାହାକୁ ଡ଼ାକି ବସିଥିବ । ଏହାକୁ 'ପ୍ରାର୍ଥନା' କହନ୍ତି ଏବଂ ପ୍ରାର୍ଥନା ହେଉଛି ଶ୍ରେଷ୍ଠତମ ଉପାସନା ।

ପୂଜା-ଉପାସନା କେବଳ ଜଣକର ହିଁ ପ୍ରାପ୍ୟ ଏବଂ ଜଣେ ହିଁ ଏହାର ଯୋଗ୍ୟ । ସେ ଆମ ସ୍ରଷ୍ଟା ଏବଂ ପାଳନକର୍ତ୍ତା । ତାଙ୍କରି ସମ୍ମୁଖରେ ମସ୍ତକ ନତ କରି ଦେବାରେ ହିଁ ଆମର ଗୌରବ । ତାଙ୍କ ବ୍ୟତୀତ ବ୍ରହ୍ମାଣ୍ଡରେ ଆଉ କାହାର ଏତେ ଶକ୍ତି ଅଛି ଯେ ଆମ ଆବଶ୍ୟକତା ପୂରଣ କରି ପାରିବ ? ଆମକୁ ବିପଦରୁ ରକ୍ଷା କରିବ କିମ୍ବା ଆମ ଭାଗ୍ୟ ବଦଳାଇ ଦେବ । ଆକାଶରୁ ପାତାଳ ପର୍ଯ୍ୟନ୍ତ ସମସ୍ତ ଜୀବ-ଜଡ଼ ଅସହାୟ । ଈଶ୍ୱର ସୃଷ୍ଟି କଲେ ସୃଷ୍ଟି ହୁଅନ୍ତି, ସେ ଜୀବିତ ରଖିଲେ ଜୀବିତ ରୁହନ୍ତି ଏବଂ ମୃତ୍ୟୁର ଆଦେଶ ଦେଲେ ମରିବାକୁ ବାଧ୍ୟ ହୁଅନ୍ତି । ସାମାନ୍ୟ ଶସ୍ୟ ଦାନାଟିଏ ମନୁଷ୍ୟ ବା ପକ୍ଷୀଟିକୁ, ଯୋଗାଇ ଦେବାର ସାମର୍ଥ୍ୟ ସଂସାରରେ ଅନ୍ୟ କାହାରି ନାହିଁ ।

ଆମେ କେବେ ଚିନ୍ତା କରିଛୁ ଯେ ଶସ୍ୟ ଦାନାଟିଏ କିପରି ପ୍ରସ୍ତୁତ ହୁଏ ? ଗୋଟିଏ ଶସ୍ୟ-ଦାନା ପ୍ରସ୍ତୁତ କରିବା ପାଇଁ ବିଶ୍ୱ-ବ୍ରହ୍ମାଣ୍ଡର ଅନେକ ମହାଶକ୍ତି ଗୁଡ଼ିକୁ ମାସ ମାସ ଧରି ମିଳିତ ଭାବରେ କାର୍ଯ୍ୟ କରିବାକୁ ପଡ଼େ । ମଞ୍ଜିଟି ମାଟିରେ ପୋତି ଦେଲାପରେ ଏହି ଶକ୍ତି ଗୁଡ଼ିକ କାର୍ଯ୍ୟ ଆରମ୍ଭ କରି ଥାଆନ୍ତି ।

ମାଟି ଖାଦ୍ୟସାର ଯୋଗାଇ ଦିଏ, ସୂର୍ଯ୍ୟ ଉତ୍ତାପ ପ୍ରଦାନ କରେ, ମେଘ ଜଳ ବ୍ୟବସ୍ଥା କରେ, ପୁଣି ବାୟୁ, ସୂର୍ଯ୍ୟ ଓ ସମୁଦ୍ର ମିଶି ମେଘ ସୃଷ୍ଟି କରନ୍ତି । ମାଟି, ପାଣି, ପବନ, ସୂର୍ଯ୍ୟ, ସମୁଦ୍ର - ସମସ୍ତେ ମିଶି ମାସ ମାସ ଧରି ନିଜ ନିଜର କର୍ତ୍ତବ୍ୟ କରନ୍ତି, ତେବେ ଯାଇ ଶସ୍ୟ ମଞ୍ଜିଟିଏ ଗୁଳ୍ମ ରୂପ ଧାରଣ କରେ ଏବଂ ବୀଜଟିଏ ବୃକ୍ଷ ହୋଇ ଠିଆ ହୁଏ । ତା' ପରେ ହିଁ ଆମେ ଫଳମୂଳ ବା ଶସ୍ୟ ଆଦି ପାଇଥାଉ । ଅର୍ଥାତ୍ ଶସ୍ୟ ଦାନାଟିଏ ସୃଷ୍ଟି କରିବା ପାଇଁ ସେତିକି ଶକ୍ତି ଦରକାର ଯେତିକି ଶକ୍ତି ଧରିତ୍ରୀ, ଜଳ, ବାୟୁ, ସୂର୍ଯ୍ୟ ଓ ସମୁଦ୍ରକୁ ନିୟନ୍ତ୍ରଣ କରିବା ପାଇଁ ଦରକାର । ଏଥିରୁ ସହଜରେ ବୁଝିହୁଏ ଯେ ମନୁଷ୍ୟର ପ୍ରତିଟି ଆବଶ୍ୟକତାକୁ ପୂରଣ କରିବା ପାଇଁ

ବ୍ରହ୍ମାଣ୍ଡ ପରିଚାଳନାର **ଶକ୍ତି ଓ ସାମର୍ଥ୍ୟ**ର ପ୍ରୟୋଜନ ରହିଛି **ଯାହା କେବଳ ବ୍ରହ୍ମାଣ୍ଡର** ଅଧୀଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାରି ନାହିଁ ।

**ଧରିତ୍ରୀ-ଆକାଶ, ସୂର୍ଯ୍ୟ-ଚନ୍ଦ୍ର, ଗ୍ରହ-ନକ୍ଷତ୍ର, ବୃକ୍ଷଲତା, ଜୀବଜନ୍ତୁ,** ମାନବ କିମ୍ବା **ଦେବତା** - ଏମାନଙ୍କ ମଧ୍ୟରୁ **କାହାକୁ ଏକ ଈଶ୍ୱରଙ୍କ** ବ୍ୟତୀତ ଦ୍ୱିତୀୟ କେହି **ରଚନା କରିଛି ?** ଏମାନଙ୍କ ମ**ଧ୍ୟରୁ କିଏ ଈଶ୍ୱରଙ୍କ** ବ୍ୟତୀତ ଅନ୍ୟ କାହାରି କୃପା **ବଳରେ** ବଞ୍ଚିଛି ? ଏମାନଙ୍କ **ମଧ୍ୟରେ କିଏ ଅଛି ଯାହାକୁ** ଈଶ୍ୱର ବିନାଶ କରିବାକୁ ଇଚ୍ଛା **କଲେ** ସେ ବଞ୍ଚିଯାଇ **ପାରିବ ?**

ଯଦି ଆମକୁ ଜୀବିତ **ରଖିବାରେ** ଅନ୍ୟ କାହାରି କୃପା ସଂପୃକ୍ତ ନୁହେଁ, ଯଦି ଆମ ଭାଗ୍ୟ ଏକାଧିକ **ବିଧାତା**ଙ୍କର ନିୟନ୍ତ୍ରଣାଧୀନ ନୁହେଁ, ତେବେ ଆମର କ୍ଷୁଦ୍ରରୁ **କ୍ଷୁଦ୍ରତମ ପୂଜା**-ଅର୍ଚ୍ଚନାର ଯୋଗ୍ୟ ମଧ ଦ୍ୱିତୀୟ କେହି ନୁହେଁ - ଏହା ଏକ ସ୍ୱତଃ ସିଦ୍ଧ **କଥା** । ଏହି ଚରମ ସତ୍ୟଟିକୁ ଗ୍ରହଣ କରିନେବା ପାଇଁ ହଜାର-ହଜାର ଧର୍ମଦୂତ ମାନଙ୍କ ମାଧ୍ୟମରେ ପୃଥିବୀର ବିଭିନ୍ନ ପ୍ରାନ୍ତରେ ଥିବା ମାନବ ସମାଜକୁ ଯୁଗେ ଯୁଗେ ଆହ୍ୱାନ ଦିଆଯାଇଛି । ତାକୁ ବାରମ୍ବାର ଚେତାଇ ଦିଆଯାଇଛି **ଯେ ଏ ସଂସାରର ଏକମାତ୍ର ଈଶ୍ୱର ଅଛନ୍ତି ଏବଂ ସେଇ ହିଁ ସମସ୍ତ ପ୍ରକାରର ସେବା ଉପାସନାର ଅଧିକାରୀ ଅଟନ୍ତି** । ଏହା ହିଁ ଆଦି ଧର୍ମର ବ୍ରହ୍ମସୂତ୍ର ଏବଂ ଇସଲାମର ମୂଳମନ୍ତ୍ର -

**لا إله إلا الله**

ଲା-ଇଲାହା ଇଲ୍ଲଲ୍ଲାହ୍

ସ୍ୱର୍ଗୀୟ ଧର୍ମର ଏହି ଅଟଳ ସିଦ୍ଧାନ୍ତ **ଆଜି ମଧ୍ୟ** ପୃଥିବୀର ପ୍ରମୁଖ ଧର୍ମଗ୍ରନ୍ଥ ମାନଙ୍କର ପୃଷ୍ଠା ମଣ୍ଡନ କରୁଛି । ଆସନ୍ତୁ ବେଦ, ବାଇବେଲ ଏବଂ କୁର୍‌ଆନର କେତୋଟି ଉଦାହରଣ ଦେଖିବା ଏବଂ ଜାଣିବା ଯେ ହିନ୍ଦୁ, ଖ୍ରୀଷ୍ଟିୟାନ୍, ୟହୁଦୀ ଏବଂ ମୁସଲମାନ ଧର୍ମାବଲମ୍ବୀ ମାନଙ୍କର ସର୍ବୋଚ୍ଚ ଗ୍ରନ୍ଥ କେଉଁ ପରମେଶ୍ୱରଙ୍କ ଉପାସନା କରିବା ପାଇଁ ଆଦେଶ ପ୍ରଦାନ କରୁଛନ୍ତି । ପାଠକମାନଙ୍କର ସନ୍ତୋଷ ପାଇଁ ଉଦ୍ଧୃତାଂଶର ଫଟୋ କପି ଉପସ୍ଥାପିତ କରାଯାଇଛି ।

# ବେଦର ଶିକ୍ଷା

ବେଦ ଅର୍ଥ 'ଜ୍ଞାନ'। ବେଦ ହିନ୍ଦୁ ଧର୍ମର ସର୍ବ ପ୍ରାଚୀନ ତଥା ସର୍ବୋଚ୍ଚ ଧର୍ମଗ୍ରନ୍ଥ। କୋଟି କୋଟି ହିନ୍ଦୁ ଭାଇ ଏହାକୁ ଈଶ୍ୱର ବାଣୀ ବୋଲି ବିଶ୍ୱାସ କରନ୍ତି। ବେଦ ବିଶାରଦ ମାନଙ୍କ ମତରେ ବେଦ ପରମେଶ୍ୱରଙ୍କ ପ୍ରେରିତ ଦିବ୍ୟବାଣୀ। ସୃଷ୍ଟିର ପ୍ରାରମ୍ଭରେ ମନୁଷ୍ୟର କଲ୍ୟାଣ ନିମନ୍ତେ ପରମାତ୍ମା ଯେଉଁ ମାର୍ଗଦର୍ଶକ ଜ୍ଞାନ ମହର୍ଷି ଅଗ୍ନି, ବାୟୁ, ଆଦିତ୍ୟ ଏବଂ ଅଙ୍ଗୀରା ଆଦି ଋଷି ମାନଙ୍କ ଅନ୍ତରରେ ପ୍ରକଟ କରିଥିଲେ, ତାହାହିଁ ଶ୍ରୁତି ବା ବେଦ। ବେଦର ପ୍ରତ୍ୟେକ ମନ୍ତ୍ରର କେହି ନା କେହି ଋଷି ଅଛନ୍ତି ଏବଂ ବେଦ ଭାଷ୍ୟକାର ମାନେ ଲେଖିଛନ୍ତି ଯେ କେବଳ ଋଗବେଦର ଋଷିଙ୍କ ସଂଖ୍ୟା ପ୍ରାୟ ୩୦୦ ହେବ। ବେଦର ଉତ୍ପତ୍ତି ସ୍ଥଳ, କାଳ ଏବଂ ଯେଉଁ ଋଷି ମାନଙ୍କ ସୂତ୍ରରୁ ଏହା ମନୁଷ୍ୟ ନିକଟରେ ପହଁଞ୍ଚିଲା ସେମାନଙ୍କ ଜୀବନୀ ବା ଶିକ୍ଷା ବିଷୟରେ ଇତିହାସରେ କୌଣସି ବିବରଣୀ ନାହିଁ।

ବେଦର ଉତ୍ପତ୍ତି ବିଷୟରେ ମତ ଭେଦ ରହିଛି। ପଣ୍ଡିତ ଦୟାନନ୍ଦ ସରସ୍ୱତୀଙ୍କ ମତରେ ବେଦ ୧୩୧୦ ନିୟୁତ ବର୍ଷ ପୂର୍ବେ ଅବତୀର୍ଣ୍ଣ ହୋଇଛି। କେତେକ ଅନ୍ୟ ବିଦ୍ୱାନ କହନ୍ତି ଏହା ୪୦୦୦ ବର୍ଷରୁ ଅଧିକ ପ୍ରାଚୀନ ନୁହେଁ। Encyclopedia Britannica ବେଦର ଇତିହାସ ବିଷୟରେ ଲେଖିଛି ଯେ ବେଦ ସମ୍ଭବତଃ ଖ୍ରୀ.ପୂ.୧୫୦୦-୧୨୦୦ ମଧ୍ୟରେ ରଚନା କରାଯାଇଛଇ ଏବଂ ଲେଖିଛି :-

> "The Vedas were handed down orally for many generations before being committed to writing."
>
> ( Britannica Ready Reference 2005, Vol.10, P.87 )

କୁରଆନ୍‌ରେ ଆଦିଗ୍ରନ୍ଥ ନାମକ ଏକ ଦିବ୍ୟଗ୍ରନ୍ଥର ଉଲ୍ଲେଖ ରହିଛି ଏବଂ

କୁରଆନ୍ ଏହା ମଧ୍ୟ ଘୋଷଣା କରୁଛି ଯେ -

وَلِكُلِّ أُمَّةٍ رَّسُولٌ

**ଭାବାର୍ଥ :-** ପ୍ରତ୍ୟେକ ସଂପ୍ରଦାୟ ପାଇଁ ଜଣେ ରସୁଲ (ମାର୍ଗଦର୍ଶକ) ପ୍ରେରିତ ହୋଇଛନ୍ତି ।

( Al-Qur'an 10-47 )

ଚାରିଗୋଟି ବେଦ ଅଛି - ରଗ୍‌ବେଦ, ଯଜୁର୍ବେଦ, ସାମବେଦ ଏବଂ ଅଥର୍ବବେଦ । ଆସନ୍ତୁ ଦେଖିବା ବେଦ ଆମକୁ କାହାର ସେବା ଉପାସନା କରିବାର ଆଦେଶ ଦେଉଛନ୍ତି ।

ରଗବେଦରେ ଆମେ ପଢୁ ଯେ ସମସ୍ତ ପ୍ରଶଂସା ଏବଂ ସ୍ତୁତିର କେବଳ ଈଶ୍ୱର ଅଧିକାରୀ ଅଟନ୍ତି :-

**ଭାବାର୍ଥ** - ଏହି ମନ୍ତ୍ରରେ ଶ୍ଳେଷାଳଙ୍କାର ଅଛି । ମନୁଷ୍ୟ ଏହି ସଂସାରରେ ଈଶ୍ୱରଙ୍କ ଦ୍ୱାରା ରଚିତ ହୋଇଥିବା ପଦାର୍ଥ ଗୁଡ଼ିକୁ ଦେଖି ଏହା କହିବା ଉଚିତ୍ ଯେ ସମସ୍ତ ଧନ୍ୟବାଦ ଏବଂ ସ୍ତୁତିର କେବଳ ଈଶ୍ୱର ଅଧିକାରୀ ଅଟନ୍ତି । ୨ ।

(Rig Veda, Part-I, Adhyaya-1, Sukta No.14, Sloka No.2)

ରଗବେଦ କୁହେ ଯେ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାରି ବିପଦ ବେଳେ ଆଶ୍ରୟ ନେବା ଅନୁଚିତ, କାରଣ ସେଇ ହିଁ ଆମର ରକ୍ଷକ ଏବଂ ମୋକ୍ଷଦାତା :-

**ଭାବାର୍ଥ**—ସମସ୍ତ ଜଗତର ରକ୍ଷକ, ମୋକ୍ଷଦାତା ତଥା ବିଦ୍ୟା, ଧନ, ଅନ୍ନଦାତା, କୃପାଳୁ ପରମେଶ୍ୱରଙ୍କୁ ଛାଡ଼ି ବିଦ୍ୱାନ୍ ଲୋକ ଅନ୍ୟ କାହାରି ମଧ୍ୟ ଈଶ୍ୱର ଭାବେ ଅଭ୍ୟସ୍ତ ବା ସ୍ତୁତ କରିବା ଅନୁଚିତ୍ । ୫ ।

( Rig Veda, Part-I, Adhyaya No.3, Sukta No.44, Sloka No.5 )

ଯଜୁର୍ବେଦ କୁହେ ଯେ ଏକ ଈଶ୍ୱର ହିଁ ସୃଷ୍ଟିର ରଚୟିତା, ଧାରଣ କର୍ତ୍ତା, ପାଳନ କର୍ତ୍ତା ଏବଂ ବିନାଶ କର୍ତ୍ତା । ତେଣୁ ସେଇ ହିଁ କେବଳ ଉପାସନା ଯୋଗ୍ୟ :-

**ଭାବାର୍ଥ**—ହେ ମନୁଷ୍ୟଗଣ ! ଯେଉଁ ଈଶ୍ୱର ସୃଷ୍ଟି ସମୟରେ ସମସ୍ତ ରଚନା କରି ଧାରଣ କରନ୍ତି, ପୁଣି ପ୍ରଳୟ କାଳରେ ବିନାଶ କରି ପୁନର୍ବାର ରଚନା କରନ୍ତି, ଯାହାଙ୍କର ଆଧାର ଦ୍ୱାରା ସମସ୍ତେ ବିଦ୍ୟମାନ ଅଛନ୍ତି ଏବଂ ବଢୁଛନ୍ତି; ସେହି ସମସ୍ତଙ୍କର ସ୍ୱାମୀ ପରମାତ୍ମାଙ୍କର ଉପାସନା କର । ତାଙ୍କଠାରୁ ଭିନ୍ନ ଅନ୍ୟ କାହାରି ଉପାସନା କର ନାହିଁ । ୨ ।

( Yajur Veda, Khanda-2, Adhyaya No.31, Sloka No.2 )

ଯଜୁର୍ବେଦରେ ଉଲ୍ଲେଖ ଅଛି ଯେ ସେ ଈଶ୍ୱର କାହା ସଦୃଶ ନୁହନ୍ତି ଏବଂ ସେ ଉତ୍ପନ୍ନ ହୁଅନ୍ତି ନାହିଁ :-

**ଭାବାର୍ଥ**—ହେ ମନୁଷ୍ୟଗଣ ! ଯେଉଁ ପରମେଶ୍ୱର ସମସ୍ତ ଐଶ୍ୱର୍ଯ୍ୟବାନ୍, କାହାର ସଦୃଶ ନୁହଁନ୍ତି, ଅନନ୍ତ ସର୍ବବ୍ୟାପ୍ତ ତ, ଉତ୍ପନ୍ନ ହୁଅନ୍ତି ନାହିଁ, ହୋଇ ନଥିଲେ ବା ହେବେ ନାହିଁ ଏବଂ ସମସ୍ତଙ୍କଠାରୁ ବଡ଼ ଅଟନ୍ତି, ତାହାଙ୍କର ତୁମ୍ଭେମାନେ ନିରନ୍ତର ଉପାସନା କର । ୭୯ ।

( Yajur Veda, Khanda-2, Adhyaya - 33, Sloka No.79 )

ଯଜୁର୍ବେଦ ଶିକ୍ଷା ଦିଏ ଯେ ପରମେଶ୍ୱର ପ୍ରକୃତି ଏବଂ ଜୀବଗଣଙ୍କଠାରୁ ପୃଥକ ଅଟନ୍ତି ଅର୍ଥାତ୍ ସେ ସୃଷ୍ଟିର କୌଣସି ଅଂଶ ବିଶେଷ ନୁହନ୍ତି :-

**ଭାବାର୍ଥ** - ହେ ମନୁଷ୍ୟଗଣ ! ଯେ ଅନନ୍ତ ବ୍ରହ୍ମ, ସେ ପ୍ରକୃତି ଏବଂ ଜୀବଗଣଙ୍କଠାରୁ ପୃଥକ୍ ଅଟନ୍ତି । ଏହିପରି ପ୍ରକୃତି ସ୍ୱରୂପ କାରଣ ବିଭୁ ଅଟନ୍ତି, ତାଙ୍କଠାରୁ ଯେ ଯେ ଉତ୍ପନ୍ନ ହୁଅନ୍ତି ସେମାନେ ସମୟ ପାଇ ଈଶ୍ୱରଙ୍କ ନିୟମ ଦ୍ୱାରା ନଷ୍ଟ ହୋଇଯାଉଛନ୍ତି ।

( Yajur Veda, Khanda-2, Adhyaya No.33, Sloka No.38 )

ଯଜୁର୍ବେଦ ଶିକ୍ଷା ଦିଏ ଯେ ଈଶ୍ୱର ନିରାକାର :-

**ଭାବାର୍ଥ**—ସବୁ ବିଦ୍ୱାନ୍ ଲୋକ ସବୁ ମନୁଷ୍ୟଙ୍କୁ ଉପଦେଶ ଦେଇ କହନ୍ତି କି "ଆମ୍ଭେମାନେ ଯେଉଁ ସର୍ବଶକ୍ତିମାନ୍ ନିରାକାର ସର୍ବତ୍ର ବ୍ୟାପକ ପରମେଶ୍ୱରଙ୍କର ଉପାସନା କରୁଁ ଏବଂ ତାଙ୍କୁ ସୁଖ ସମୃଦ୍ଧିର ବୃଦ୍ଧି କରିବା ଦାତା ବୋଲି ଜାଣୁଁ; ତୁମ୍ଭେମାନେ ମଧ୍ୟ ତାଙ୍କର ଉପାସନା କର ଏବଂ ତାଙ୍କୁ ସମସ୍ତଙ୍କର ସମୃଦ୍ଧି ଦାତା ବୋଲି ବୁଝ" । ୧୮ ।

( Yajur Veda, Khanda-2, Adhyaya No.25, Slok No.18 )

ଯଜୁର୍ବେଦରେ ଉଲ୍ଲେଖ ଅଛି ଯେ ଆମ ଈଶ୍ୱର ଅଦ୍ୱିତୀୟ । ତାଙ୍କରି ଉପାସନା ଏବଂ ଆଜ୍ଞା ପାଳନ କଲେ ସେ ମନୁଷ୍ୟକୁ ଧର୍ମ ମାର୍ଗରେ ପରିଚାଳିତ କରନ୍ତି :-

**ଭାବାର୍ଥ**—ଯେ ସତ୍ୟଭାବ ସହିତ ପରମେଶ୍ୱରଙ୍କ ଉପାସନା କରନ୍ତି, ସର୍ବଦା ତାଙ୍କର ଆଜ୍ଞା ପାଳନ କରନ୍ତି ଏବଂ ସର୍ବୋପରି ଉପକାରଯୋଗ୍ୟ ପରମାତ୍ମାଙ୍କୁ ମାନନ୍ତି, ତାହାଙ୍କୁ ଦୟାଳୁ ଈଶ୍ୱର ପାପାଚରଣ ମାର୍ଗରୁ ପୃଥକ କରି ଧର୍ମଯୁକ୍ତ ମାର୍ଗରେ ଚଲାଇ ବିଜ୍ଞାନ ଦେଇ ଧର୍ମ, ଅର୍ଥ, କାମ ଏବଂ ମୋକ୍ଷକୁ ସିଦ୍ଧ କରିବା ନିମନ୍ତେ ସମର୍ଥ କରନ୍ତି । ଏଣୁ ଏକ ଅଦ୍ୱିତୀୟ ଈଶ୍ୱରଙ୍କୁ ଛାଡ଼ି ଅନ୍ୟ କାହାରି ଉପାସନା କଦାପି ନକରିବା ଉଚିତ । ୧୬ ।

( Yajur Veda, Khanda-2, Adhyaya No.40, Slok No.16 )

ଋଗବେଦରୁ ଆମେ ଜାଣୁ ଯେ ଈଶ୍ୱରଙ୍କୁ କାହାରି ସହାୟତାର ଆବଶ୍ୟକତା ନାହିଁ :-

**ଭାବାର୍ଥ**—ଯେ ସମସ୍ତଙ୍କର ପୂର୍ଣ୍ଣ, ଅନ୍ତର୍ଯାମୀ, ବ୍ୟାପକ ଏବଂ ସକଳ ଐଶ୍ୱର୍ଯ୍ୟର ଦାତା, ଯାହାଙ୍କର ଅନ୍ୟ କେହି ଈଶ୍ୱର ନାହାନ୍ତି, ଯେ ଅନ୍ୟ କାହାରି ସହାୟତା ଇଚ୍ଛା କରନ୍ତି ନାହିଁ, ତାହାଙ୍କୁ ସକଳ ମନୁଷ୍ୟ ଭକ୍ତି ଯୁକ୍ତି ଦ୍ୱାରା ସେବା କରିବା ଉଚିତ୍ । ଯେଉଁ ମନୁଷ୍ୟ ସେହି ପରମେଶ୍ୱରଙ୍କୁ ଛାଡ଼ି ଅନ୍ୟକୁ ଇଷ୍ଟ ଦେବ ମାନୁଅଛନ୍ତି, ସେହି ଭାଗ୍ୟହୀନ ବଡ଼ ବଡ଼ ଘୋର ଦୁଃଖକୁ ସଦା ପ୍ରାପ୍ତ ହେଉଅଛନ୍ତି । ୯ ।

( Rig Veda, Adhyaya No.1, Sukta 7, Sloka No.9 )

ଋଗବେଦ ଏହା ମଧ୍ୟ କୁହେ ଯେ ଅନ୍ୟ କାହାରି ଉପାସନା ଫଳହୀନ :-

**ଭାବାର୍ଥ**—ମନୁଷ୍ୟମାନଙ୍କ ଦ୍ୱାରା ଯେ ସମସ୍ତଙ୍କର ପ୍ରକାଶକ, ସକଳ ଜଗତକୁ ଉତ୍ପନ୍ନ ବା ସମସ୍ତଙ୍କର ରକ୍ଷକ ଜଗଦୀଶ୍ୱର ଅଟନ୍ତି, ସେ ସବୁ ସମୟରେ ଉପାସନା କରିବା-ଯୋଗ୍ୟ ଅଟନ୍ତି; କାରଣ ତାଙ୍କୁ ଛାଡ଼ି ଅନ୍ୟ କାହାରି ଉପାସନା କରି ଈଶ୍ୱରଙ୍କ ଉପାସନାର ଫଳ ଚାହିଁଲେ ତାହା କଦାପି ମିଳିପାରେ ନାହିଁ । ଏଣୁ ତାଙ୍କ ଉପାସନା ସ୍ଥାନରେ କେହି ଲୋକ କୌଣସି ଦ୍ୱିତୀୟ ପଦାର୍ଥର ସ୍ଥାନ କଦାପି କରି ନପାରେ । ୩ ।

( Rig Veda, Part-I, Adhyaya No.2, Sukta 24, Sloka No.3 )

ଏଥର ଆସନ୍ତୁ ଦେଖିବା ଗାୟତ୍ରୀ ମନ୍ତ୍ର । ଅନେକ ହିନ୍ଦୁ ଭାଇ ଏହି ମନ୍ତ୍ରକୁ ପାଖରେ ରଖନ୍ତି ଏବଂ ଏହାର ଜପ ମଧ୍ୟ କରନ୍ତି ।

ॐ भूर्भुवः स्वः ।
तत्सवितुर्वरेण्यम् भर्गो देवस्य धीमहि ।
धियो यो नः प्रचोदयात् ॥

**ଭାବାର୍ଥ**—ସବୁ ମନୁଷ୍ୟ ସଚ୍ଚିଦାନନ୍ଦ ସ୍ୱରୂପ, ନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତ ସ୍ୱଭାବ, ସମସ୍ତଙ୍କର ଅନ୍ତର୍ଯ୍ୟାମୀ ପରମାତ୍ମାଙ୍କୁ ଛାଡ଼ି ତାଙ୍କ ସ୍ଥାନରେ ଅନ୍ୟ କୌଣସି ପଦାର୍ଥର ଉପାସନା ସ୍ଥାପନ କେବେ କଦାପି ନ କରିବା ଉଚିତ ; କାରଣ ଆମ୍ଭମାନଙ୍କର ଯେଉଁ ଉପାସ୍ୟ ପରମାତ୍ମା ଆମ୍ଭମାନଙ୍କର ବୁଦ୍ଧିକୁ ଧର୍ମ ଆଚରଣରେ ପ୍ରବୃତ୍ତ କରନ୍ତି ତାଙ୍କ ଦ୍ୱାରା ଶୁଦ୍ଧ ହୋଇ ଆମ୍ଭେମାନେ ସେହି ପରମାତ୍ମାଙ୍କୁ ପ୍ରାପ୍ତ ହୋଇ ଇହଲୋକ ଏବଂ ପରଲୋକର ସୁଖ ଭୋଗ କରୁଁ । ୯ ।

( Yajur Veda, Khanda-2, Adhyaya - 22, Mantra No.9 )

ପରବର୍ତ୍ତୀ ଶ୍ଳୋକରେ ଏହାର ଅର୍ଥକୁ ଆହୁରି ସ୍ପଷ୍ଟ କରାଯାଇଛି ଏବଂ ଉପଦେଶ ଦିଆଯାଇଛି ଯେ କୌଣସି ଜଡ଼ ପଦାର୍ଥର ଉପାସନା କରିବା ଅନୁଚିତ୍ :-

**ଭାବାର୍ଥ**—ମନୁଷ୍ୟ ଏହି ମନ୍ତ୍ର ସହିତ ପୂର୍ବୋକ୍ତ ମନ୍ତ୍ର ଗାୟତ୍ରୀ ଆହ୍ୱାନ ଗୁରୁମନ୍ତ୍ର ଅଟେ ତାହାର ଅର୍ଥକୁ ଜାଣିବା ଉଚିତ । ଚେତନ ସ୍ୱରୂପ ପରମାତ୍ମାଙ୍କର ଉପାସନାକୁ ଛାଡ଼ି ଅନ୍ୟ କୌଣସି ଜଡ଼ର ଉପାସନା କେବେ ନ କରିବା ଉଚିତ କାରଣ ଉପାସନା ଅର୍ଥାତ୍ ସେବା କଲେ ହେଉଥିବା ଜଡ଼ ପଦାର୍ଥ ଦ୍ୱାରା ଲାଭ ତାହେ ଏବଂ ରକ୍ଷଣ ହୁଏ ନାହିଁ । ଏଣୁ ଚିଦ୍ଘନ, ସମସ୍ତ ଜଗତ ଚେତନ ସ୍ୱରୂପ ଜଗଦୀଶ୍ୱରଙ୍କର କେବଳ ଉପାସନା କରିବା ଉଚିତ ଅଟେ । ଅନ୍ୟ ଜଡ଼ତା ଆଦି ଗୁଣଯୁକ୍ତ ପଦାର୍ଥ ଉପାସ୍ୟ ନୁହଁନ୍ତି । ୧୦ ।

( Yajur Veda, Ch. No.22, Manta No.10 )

ଋଗବେଦ କୁହେ ଯେ ଈଶ୍ୱରଙ୍କର କୌଣସି ଅବତାର ନାହିଁ :-

**ଭାବାର୍ଥ**—ଈଶ୍ୱର ଏହି ମନ୍ତ୍ରରେ ସମସ୍ତ ମନୁଷ୍ୟଙ୍କ ହିତ ନିମନ୍ତେ ଉପଦେଶ ଦେଉଛନ୍ତି—"ହେ ମନୁଷ୍ୟଗଣ ! ତୁମ୍ଭେମାନେ ମୋତେ ଛାଡ଼ି ଅନ୍ୟ କୌଣସି ଉପାସ୍ୟ ଦେବଙ୍କୁ କଦାପି ସ୍ୱୀକାର କରିବା ଉଚିତ ନୁହେଁ । କାରଣ ଏକମାତ୍ର ମୋତେ ଛାଡ଼ି ଅନ୍ୟ ଦ୍ୱିତୀୟ ଈଶ୍ୱର କେହି ନାହାନ୍ତି । ଯେତେବେଳେ ବେଦରେ ଏପରି ଉପଦେଶ ଅଛି, ସେତେବେଳେ ଯେଉଁ ମନୁଷ୍ୟ ଅନେକ ଈଶ୍ୱର ବା ତାଙ୍କର ଅବତାରକୁ ମାନୁଛି, ସେ ସମସ୍ତଙ୍କଠାରୁ ବଡ଼ ମୂଢ଼ ଅଟେ । ୧୦ ।

( Rig Veda, Chapter No.1, Sukta 7, Sloka No.10 )

( ବେଦର ଶ୍ଳୋକ ଗୁଡ଼ିକ ବେଦ ଭାଷ୍ୟକାର ମହର୍ଷି ଦୟାନନ୍ଦ ସରସ୍ୱତୀଙ୍କ ବେଦଭାଷ୍ୟରୁ ଉଦ୍ଧୃତ । ଓଡ଼ିଆ ଅନୁବାଦ ଶ୍ରୀ ମଧୁସୂଦନ ମହାନ୍ତି ଏବଂ ପ୍ରକାଶକ ଧର୍ମଗ୍ରନ୍ଥ ଷ୍ଟୋର, କଟକ )

ସନାତନ ଧର୍ମର ସର୍ବଶ୍ରେଷ୍ଠ ଗ୍ରନ୍ଥରେ ବିଶୁଦ୍ଧ ଏକେଶ୍ୱରବାଦର ଶିକ୍ଷା ବିଷୟରେ ଆମେ ଅବଗତ ହେଲୁ । ଏବେ ଆସନ୍ତୁ ଦେଖିବା ବାଇବେଲରେ ଈଶ୍ୱରବାଦ ।

# ବାଇବଲ୍‌ର ଶିକ୍ଷା

ବାଇବଲର ପରିଚୟ ଦେଇ ଏହାର ପ୍ରକାଶକ ବାଇବଲ ମଧ୍ୟରେ ଲେଖିଛନ୍ତି :-

"ବାଇବଲ ୬୬ଟି ପୁସ୍ତକର ସମଷ୍ଟି । ଏହାର ମୁଖ୍ୟତଃ ଦୁଇଟି ଭାଗ ରହିଛି, ୧- ପୁରାତନ-ନିୟମ, ଯାହା ଯିହୁଦୀମାନଙ୍କର ଧର୍ମଶାସ୍ତ୍ର ଓ ୨- ନୂତନ-ନିୟମ, ଯେଉଁଥିରେ ଯୀଶୁଖ୍ରୀଷ୍ଟ ଓ ଆଦ୍ୟ ଖ୍ରୀଷ୍ଟିୟାନମାନଙ୍କ ବିବରଣୀ ରହିଛି । ୧୫୦୦ ବର୍ଷ ଧରି ବିଭିନ୍ନ ସମୟରେ, ବିଭିନ୍ନ ସ୍ଥାନରେ ବାସ କରୁଥିବା ବିଭିନ୍ନ ଲେଖକମାନଙ୍କ ଦ୍ୱାରା ବାଇବଲ ଲିଖିତ ହୋଇଛି । ଲେଖକମାନେ ମୁଖ୍ୟତଃ ତିନୋଟି ଭାଷାରେ ଏହା ଲେଖିଥିଲେ ।"

ପୁରାତନ ନିୟମ (Old Testament) ରେ ମୋଟ ୩୯ଟି ପୁସ୍ତକ ରହିଛି । ଏହାର ପ୍ରଥମ ପାଞ୍ଚଟି ପୁସ୍ତକ ହେଉଛି :-

୧. Genesis (ଆଦି ପୁସ୍ତକ)
୨. Exodus (ଯାତ୍ରା ପୁସ୍ତକ)
୩. Leviticus (ଲେବୀୟ ପୁସ୍ତକ)
୪. Numbers (ଗଣନା ପୁସ୍ତକ)
୫. Deuteronomy (ଦ୍ୱିତୀୟ ବିବରଣ)

ଏହି ପାଞ୍ଚଟି ପୁସ୍ତକ ମହାମାନ୍ୟ ଧର୍ମଦୂତ ମୁସାଙ୍କ (Moses-1400 BC – 1300 BC) ମାଧ୍ୟମରେ ପ୍ରକଟିତ ହୋଇଥିଲା ବୋଲି କୁହାଯାଏ । କୁରଆନ୍ ମଧ୍ୟ ଆମକୁ ସଂବାଦ ଦେଉଛି ଯେ ମହାମାନ୍ୟ Moses ଙ୍କୁ ଦିବ୍ୟଗ୍ରନ୍ଥ ପ୍ରଦାନ କରାଯାଇଥିଲା କିନ୍ତୁ କୁରଆନ୍‌ରେ ଏହି ଗ୍ରନ୍ଥର ନାମ ''ତୈରାତ୍'' (Torah) ବୋଲି ଉଲ୍ଲେଖ ରହିଛି ।

ପୁରାତନ ନୀୟମ ଅର୍ଥାତ୍ Old Testament ରେ Psalms ନାମକ ପୁସ୍ତକ ମଧ୍ୟ ଅଛି ଯାହା ମହାମାନ୍ୟ ଧର୍ମଦୂତ ଦାଉଦଙ୍କ (David : 1000–962 BC) ମାଧ୍ୟମରେ ପ୍ରକଟିତ ହୋଇଥିଲା । କୁରଆନ୍ କହେଯେ ମହାମାନ୍ୟ ଦାଉଦଙ୍କୁ ଦିବ୍ୟଗ୍ରନ୍ଥ ପ୍ରଦାନ କରାଯାଇଥିଲା, କିନ୍ତୁ ଏହାର ନାମ 'ଜବୁର୍' (Zaboor) ଥିଲା ।

ନୂତନ ନିୟମରେ (New Testament) ୨୭ଟି ପୁସ୍ତକ ରହିଛି । ଏହାର ପ୍ରଥମ ଚାରିଗୋଟି Gospels ଯଥା Mark, Mathew, Luke ଏବଂ John, ଯେଉଁଥିରେ ପରମେଶ୍ୱରଙ୍କ ମହାମାନ୍ୟ ଧର୍ମଦୂତ ଇସା (Prophet Jesus Christ : 4 BC – 30 AD) ଅର୍ଥାତ୍ ଯୀଶୁଖ୍ରୀଷ୍ଟଙ୍କର ଶିକ୍ଷା ଏବଂ ବୀବରଣୀ ମାନ ରହିଛି । ଏହି ପୁସ୍ତକ ଗୁଡ଼ିକ ଦିବ୍ୟଗ୍ରନ୍ଥ ବୋଲି ଖ୍ରୀଷ୍ଟିୟାନ ଭାଇମାନେ ବିଶ୍ୱାସ କରନ୍ତି । କୁରଆନ୍ ମହାମାନ୍ୟ ଯୀଶୁଖ୍ରୀଷ୍ଟଙ୍କ ମାଧ୍ୟମରେ ଏକ ଦିବ୍ୟ ଗ୍ରନ୍ଥର ଅବତରଣ ଘଟିଥିବା ବିଷୟ ଘୋଷଣା କରୁଛି କିନ୍ତୁ ଏଥିରେ ଉଲ୍ଲେଖ ଅଛିଯେ ସେ ଗ୍ରନ୍ଥଟିର ନାମ 'ଇଂଜୀଲ୍' (Injeel) ଥିଲା ।



New Testament ର ଅବଶିଷ୍ଟ ପୁସ୍ତକ ଗୁଡ଼ିକ ବିଭିନ୍ନ ଲୋକମାନଙ୍କ ଦ୍ୱାରା ରଚ୍‌ନା କରାଯାଇଛି ।

ବାଇବଲର ଇତିହାସ ସଂପର୍କରେ ଆମେ ଇତିହାସରୁ ଜାଣିବାକୁ ପାଉ ଯେ Old Testament ର ହିବ୍ରୁ ଭାଷାରେ ଥିବା ମୂଳ ଲେଖାଟି ହଜିଗଲା । (Britannica Ready Reference Encyclopedia, 2005 Vol.2, Pg-6) ପୁରାତନ ନୀୟମର ପୁସ୍ତକ ଗୁଡ଼ିକର ସଂଗ୍ରହ ଏବଂ ସୁରକ୍ଷା ବିଷୟରେ ଓଡ଼ିଆ ବାଇବଲର ପ୍ରକାଶକ ବାଇବଲରେ ଲେଖିଛନ୍ତି -

''ପୁରାତନ ନିୟମର ପୁସ୍ତକଗୁଡ଼ିକ କିପରି ଏବଂ କେବେ ସଂଗ୍ରହ କରାଗଲା, ତା'ର ବିସ୍ତୃତ ବିବରଣୀ ଜାଣିବା ଅସମ୍ଭବ ।''

ଏହାର ପ୍ରଥମ ପାଞ୍ଚଗୋଟି ପୁସ୍ତକ ସଂବନ୍ଧରେ Encyclopedia Britannica ର ଲେଖକ ଲେଖିଛନ୍ତି -

"By tradition their authorship has been ascribed to Moses, but biblical scholarship has shown that they were written and compiled at a much later date, probably in the 9th - 5th Century BC."

( Britannica Ready Reference Encyclopedia, 2005 Vol.9, P-274 )

ସେହିପରି New Testament ର ୨୭ଟି ପୁସ୍ତକ ବିଷୟରେ Britannicaର ଲେଖକ ଲେଖିଛନ୍ତି -

"Most were written in the later 1st Century AD, though none can be dated precisely."

( Britannica Ready Reference Encyclopaedia, 2005, Vol.7 P-100 )

ବ୍ରିଟାନିକାରେ ଏହା ମଧ୍ୟ ଉଲ୍ଲେଖ ଅଛି ଯେ -

"Authorship of many biblical books is annonymous or pseudonymous, .... " ଅର୍ଥାତ୍ ବାଇବେଲରେ ଥିବା ଅନେକ ପୁସ୍ତକ ଗୁଡିକର ଲେଖକ ଅଜ୍ଞାତ ନାମଧାରୀ ଅଥବା ଛଦ୍ମନାମ ଧାରୀ ।

( Britannica Ready Reference Encyclopedia, 2005, Vol.2 Pg-5 )

ଆସନ୍ତୁ ଦେଖିବା ବାଇବଲରେ ଈଶ୍ୱରବାଦର କିଭଳି ଶିକ୍ଷା ରହିଛି । ବାଇବେଲ୍‌ରେ ଉଲ୍ଲେଖ ଅଛି :-

''ଏହେତୁ ତୁମ୍ଭେମାନେ ଆମ୍ଭର ପ୍ରତିଯୋଗୀ ଅନ୍ୟ ଦେବତାଗଣ ନିର୍ମାଣ

କରିବ ନାହିଁ, ଆପଣାମାନଙ୍କ ନିମନ୍ତେ ରୌପ୍ୟମୟ ଦେବତା ଓ ସ୍ୱର୍ଣ୍ଣମୟ ଦେବତା ନିର୍ମାଣ କରିବ ନାହିଁ ।''

( Book of Exodus, Ch. 20, Verse No. 23 )

''ଆମ୍ଭେ ତୁମ୍ଭମାନଙ୍କୁ ଯାହା ଯାହା କହିଅଛୁ, ସେସମସ୍ତ ବିଷୟରେ ସାବଧାନ ହୁଅ, ଅନ୍ୟ ଦେବଗଣର ନାମ ସ୍ମରଣ କରାଅ ନାହିଁ, କିଅବା ତୁମ୍ଭମାନଙ୍କ ମୁଖରୁ ତାହା ଶୁଣା ନ ଯାଉ ।''

( Book of Exodus, Ch. 23, Verse No. 13 )

''ଯେହେତୁ ଆମ୍ଭେମାନେ ଯେକୌଣସି ସମୟରେ ପ୍ରାର୍ଥନା କରୁ, ସେସମୟରେ ସଦାପ୍ରଭୁ ଆମ୍ଭମାନଙ୍କ ପରମେଶ୍ୱର ଯେପରି ଆମ୍ଭମାନଙ୍କର ନିକଟବର୍ତ୍ତୀ ହୁଅନ୍ତି, ସେପରି ଆଉ କେଉଁ ମହାଗୋଷ୍ଠୀର ପରମେଶ୍ୱର ସେମାନଙ୍କର ନିକଟବର୍ତ୍ତୀ ହୁଅନ୍ତି ?''

( Book of Deuteronomy, Ch. 4, Verse No. 7 )

''ଆଉ ତୁମ୍ଭର କି ତୁମ୍ଭ ପୂର୍ବପୁରୁଷମାନଙ୍କର ଅଜ୍ଞାତ କୌଣସି ଦେବତା, ଅର୍ଥାତ୍, ତୁମ୍ଭମାନଙ୍କ ଚତୁର୍ଦ୍ଦିଗସ୍ଥିତ ନିକଟବର୍ତ୍ତୀ ବା ତୁମ୍ଭଠାରୁ ଦୂରବର୍ତ୍ତୀ, ପୃଥିବୀର ଏକ ପ୍ରାନ୍ତରୁ ପୃଥିବୀର ଅନ୍ୟ ପ୍ରାନ୍ତ ମଧ୍ୟରେ ଯେକୌଣସି ଗୋଷ୍ଠୀର ଯେକୌଣସି ଦେବତା ହେଉ, ତାହା ବିଷୟରେ ତୁମ୍ଭକୁ ଭୁଲାଇ ଯେବେ ତୁମ୍ଭ ମାତୃ-ପୁତ୍ର ଭ୍ରାତା, କି ତୁମ୍ଭ ପୁତ୍ର, କି ତୁମ୍ଭ କନ୍ୟା, କି ତୁମ୍ଭ ବକ୍ଷଃସ୍ଥାୟିନୀ ଭାର୍ଯ୍ୟା, କିଅବା ତୁମ୍ଭ ପ୍ରାଣସମାନ ମିତ୍ର ଗୋପନରେ କହେ, ଚାଲ, ଆମ୍ଭମାନେ ଅନ୍ୟ ଦେବତାଗଣର ସେବା କରୁ, ତେବେ ତୁମ୍ଭ ସେହି ଲୋକର କଥାରେ ସମ୍ମତ ହେବ ନାହିଁ, କି ତାହାର କଥା ଶୁଣିବ ନାହିଁ, କିଅବା ତାହା ପ୍ରତି ଚକ୍ଷୁଲଜ୍ଜା କରିବ ନାହିଁ, ଅବା ତାହାକୁ ଦୟା କରିବ ନାହିଁ, କି ତାହାକୁ ଲୁଚାଇ ରଖିବ ନାହିଁ ।''

( Book of Deuteronomy, Ch. 13, Verse No. 6-8 )

''ତୁମ୍ଭେମାନେ ଆପଣାମାନଙ୍କ ସଦାପ୍ରଭୁ ପରମେଶ୍ୱରଙ୍କର ସେବା କରିବ, ତହିଁରେ ସେ ତୁମ୍ଭମାନଙ୍କ ଅନ୍ନଜଳରେ ଆଶୀର୍ବାଦ କରିବେ, ପୁଣି ଆମ୍ଭେ ତୁମ୍ଭ ମଧ୍ୟରୁ ରୋଗ ଦୂର କରିବା ।''

( Book of Exodus, Ch. 23, Verse No. 25 )

''ଯେଉଁ ଲୋକ କେବଳ ସଦାପ୍ରଭୁଙ୍କ ବିନା କୌଣସି ଦେବତା ନିକଟରେ ବଳିଦାନ କରେ, ସେ ବର୍ଜ୍ଜନୀୟ ରୂପେ ବିନଷ୍ଟ ହେବ ।''

( Book of Exodus, Ch. 22, Verse No. 20 )

''ଯେଉଁ ମନୁଷ୍ୟ ସଦାପ୍ରଭୁଙ୍କ ଘୃଣିତ, ଶିଳ୍ପକରର ହସ୍ତକୃତ କୌଣସି ଖୋଦିତ କି ଛାଞ୍ଚରେ ଢଳା ପ୍ରତିମା ନିର୍ମାଣ କରି ଗୋପନରେ ସ୍ଥାପନ କରେ, ସେ ଶାପଗ୍ରସ୍ତ ହେଉ । ତହିଁରେ ସମସ୍ତ ଲୋକ ଉତ୍ତର ଦେଇ କହିବେ, ଆମେନ୍ (ଏପରି ହେଉ) ।''

( Book of Deuteronomy, Ch. 27, Verse No. 15 )

''(ସାବଧାନ), ନୋହିଲେ ତୁମ୍ଭେମାନେ ଆପଣାମାନଙ୍କୁ ଭ୍ରଷ୍ଟ କରି ପୁରୁଷର କି ସ୍ତ୍ରୀର ମୂର୍ତ୍ତି, କି ପୃଥିବୀସ୍ଥ କୌଣସି ପଶୁର ମୂର୍ତ୍ତି, କି ଆକାଶରେ ଉଡ଼ନ୍ତା କୌଣସି ପକ୍ଷୀର ମୂର୍ତ୍ତି, କି ଭୂଚର କୌଣସି ଉରୋଗାମୀ ଜନ୍ତୁର ମୂର୍ତ୍ତି, କି ଭୂମିର ନୀଚସ୍ଥ ଜଳଚର କୌଣସି ଜନ୍ତୁର ମୂର୍ତ୍ତି କରି ଆପଣାମାନଙ୍କ ନିମନ୍ତେ କୌଣସି ଖୋଦିତ ପ୍ରତିମା ନିର୍ମାଣ କରିବ ।

କିଅବା ସଦାପ୍ରଭୁ ତୁମ୍ଭମାନଙ୍କ ପରମେଶ୍ୱର ଯେଉଁ ମାନଙ୍କୁ ସମୁଦାୟ ଆକାଶମଣ୍ଡଳର ଅଧଃସ୍ଥିତ ସମସ୍ତ ଦେଶୀୟ ଲୋକମାନଙ୍କ ନିମନ୍ତେ ନିଯୁକ୍ତ କରିଅଛନ୍ତି, ଏପରି ସୂର୍ଯ୍ୟ ଓ ଚନ୍ଦ୍ର ଓ ତାରା ପ୍ରଭୃତି ଆକାଶର ସମସ୍ତ ବାହିନୀ ପ୍ରତି ଊର୍ଦ୍ଧ୍ୱଦୃଷ୍ଟି କରି ଅନାଇଲେ ଭ୍ରାନ୍ତ ହୋଇ ତୁମ୍ଭେମାନେ ସେମାନଙ୍କୁ ପ୍ରଣାମ କରିବ ଓ ସେବା କରିବ ।''

( Book of Deuteronomy, Ch. 4, Verse No. 16-19 )

''ମୁଁ ତୁମ୍ଭମାନଙ୍କୁ ଯାହା ଆଜ୍ଞା କରୁଅଛି, ସେହି ବାକ୍ୟରେ ତୁମ୍ଭେମାନେ କିଛି ମିଶାଇବ ନାହିଁ, କିଅବା ତହିଁରୁ କିଛି ଊଣା କରିବ ନାହିଁ, ମୁଁ ତୁମ୍ଭମାନଙ୍କୁ ଯାହା ଯାହା ଆଜ୍ଞା କରୁଅଛି, ତୁମ୍ଭେମାନେ ସଦାପ୍ରଭୁ ତୁମ୍ଭମାନଙ୍କ ପରମେଶ୍ୱରଙ୍କର ସେହି ସବୁ ଆଜ୍ଞା ପାଳନ କର ।''

( Book of Deuteronomy, Ch. 4, Verse No. 2 )

(ବାଇବଲର ଉଦ୍ଧୃତାଂଶ ଗୁଡିକ ବାଇବେଲ ସୋସାଇଟି ଅଫ୍ ଇଣ୍ଡିଆ, ମହାତ୍ମା ଗାନ୍ଧୀ ରୋଡ୍, ବାଙ୍ଗାଲୋରରୁ ପ୍ରକାଶିତ ଓଡ଼ିଆ ବାଇବଲରୁ ନିଆଯାଇଛି ।)

# କୁର୍‌ଆନ୍‌ର ଶିକ୍ଷା

କୁରଆନ୍ ୬୧୦ ମସିହାରେ ଆରବ ଦେଶର ମକ୍‌କା ସହରରେ ଜନ୍ମଲାଭ କରିଥିବା ଈଶ୍ୱରଙ୍କର ମହାମାନ୍ୟ ଧର୍ମଦୂତ ମୁହମ୍ମଦଙ୍କ (Prophet Muhammad 510-632 AD) ମାଧ୍ୟମରେ ଦୀର୍ଘ ୨୩ ବର୍ଷ ଧରି ଅବତୀର୍ଣ୍ଣ ହୋଇଥିଲା । ବିଶ୍ୱର କୋଟି କୋଟି ନରନାରୀ ଏହାକୁ ଈଶ୍ୱରଙ୍କର ବିଶୁଦ୍ଧ ବାଣୀ ବୋଲି ବିଶ୍ୱାସ କରନ୍ତି ।



କୁରଆନ ଅଦ୍ଭୁତ ସୁରକ୍ଷା ବଳୟ ମଧ୍ୟରେ ରହିଛି । ଏହା ଏକମାତ୍ର ଦିବ୍ୟଗ୍ରନ୍ଥ ଯାହାର ସୁରକ୍ଷାର ଦାୟୀତ୍ୱ ସ୍ୱୟଂ ପରମେଶ୍ୱର ଗ୍ରହଣ କରିଛନ୍ତି ଏବଂ ଏଥିପାଇଁ ସେ ଅଙ୍ଗୀକାର ବଦ୍ଧ । ସମସ୍ତ ପ୍ରକାର ଅପଭ୍ରଂଶ ଏବଂ ଅପମିଶ୍ରଣରୁ କୁରଆନ୍‌କୁ ରକ୍ଷା କରିବା ପାଇଁ ପରମେଶ୍ୱରଙ୍କ ବଚ୍‌ନବଦ୍ଧତାର କୁରଆନ ମଧ୍ୟରେ ହିଁ ଘୋଷଣା କରାଯାଇଛି । ପରମେଶ୍ୱର କୁହନ୍ତି -

إِنَّا نَحْنُ نَزَّلْنَا الذِّكْرَ وَإِنَّا لَهُ لَحَافِظُونَ ﴿٩﴾

**ଭାବାର୍ଥ :-** ଆମ୍ଭେ ହିଁ ଏହି କୁର୍‌ଆନ୍ କୁ ଅବତୀର୍ଣ୍ଣ କରିଅଛୁ ଏବଂ (ସ୍ୱୟଂ) ଆମ୍ଭେହିଁ ଏହାର ସଂରକ୍ଷକ ।

( Al-Qur'an 15 : 9 )

ମହାମାନ୍ୟ ମୁହମ୍ମଦଙ୍କ ଜୀବନ କାଳରେ ହିଁ ଏହି ଗ୍ରନ୍ଥ ବିଭିନ୍ନ ଉପାୟରେ ସୁରକ୍ଷିତ ହୋଇସାରିଥିଲା । ମହାମାନ୍ୟ ମୁହମ୍ମଦ ଲେଖା ପଢ଼ା ଜାଣି ନଥିଲେ । କୁର୍‌ଆନ୍‌ର ପ୍ରତିଟି ଶ୍ଳୋକ ପ୍ରକଟିତ ହେବା ମାତ୍ରେ ସେ ତାକୁ ଲିପିବଦ୍ଧ କରାଇ ନେଉଥିଲେ । ଏହାଛଡ଼ା ତାଙ୍କର ଅନୁଗାମୀ ମାନେ କୁର୍‌ଆନ୍‌କୁ କଣ୍ଠସ୍ଥ କରି ନେଉଥିଲେ । ଏ ସଂବନ୍ଧରେ ପ୍ରସିଦ୍ଧ Encyclopaedia Britannica ଲେଖନ୍ତି -

> "Obviously, many people learned the words of the revelation by heart, but there are also traditions that, at the time of their revelation, Muhammad had them written down on "pieces of paper, stones, palm-leaves, shoulder-blades, ribs, and bits of leather," i.e. whatever writing material there was at hand."

(Qur'an-Encyclopaedia Britannica 2006 Ultimate Reference Suite DVD)

୧୪୦୦ ବର୍ଷ ହେଲା ପ୍ରତ୍ୟେକ ଶତାବ୍ଦୀରେ ହଜାର ହଜାର, ଲକ୍ଷ ଲକ୍ଷ ଲୋକ ସଂପୂର୍ଣ୍ଣ କୁର୍‌ଆନ୍‌କୁ କଣ୍ଠସ୍ଥ କରି ଆସିଛନ୍ତି । ଆଜି ମଧ୍ୟ ବିଶ୍ୱର କୋଟି କୋଟି ଲୋକଙ୍କ ହୃଦୟରେ କୁରଆନର ଅକ୍ଷର ଅକ୍ଷର ସୁରକ୍ଷିତ । କୁରଆନର କଣ୍ଠସ୍ଥକାରୀଙ୍କୁ 'ହାଫିଜ୍' କୁହାଯାଏ । ଏଥିରେ କୌଣସି ଅପମିଶ୍ରଣ ବା ପରିବର୍ତ୍ତନ ମାନବ ଦ୍ୱାରା ସମ୍ଭବ ନୁହେଁ । ଏହାର ଅନୁବାଦ ମଧ୍ୟ ପୃଥକ ରହେ । ମହାମାନ୍ୟ ମୁହମ୍ମଦଙ୍କ ଶିକ୍ଷା ଏବଂ ଜୀବନ ଇତିହାସର ବିବରଣୀ ମଧ୍ୟ ପୃଥକ ଭାବେ ଲିପିବଦ୍ଧ କରାଯାଇଛି । ଏ ସଂବନ୍ଧରେ ପ୍ରସିଦ୍ଧ ବ୍ରିଟାନିକାର ଲେଖକ ଲେଖିଛନ୍ତି -

> "The Qur'an is, however, left untouched by criticism; as the infallible word of God it cannot have been influenced by the circumstances under which it was revealed, it can contain no mistake, and it cannot be superseded by any new discovery."

(Qur'an - Encyclopaedia Britannica 2006 Ultimate Reference Suite DVD)

Encyclopaedia Britannica ଏହା ମଧ୍ୟ ଲେଖିଛନ୍ତି ଯେ -

"It can safely be said that the textual tradition of the Qur'an is much firmer and more uniform than that of the New Testament."

(Qur'an - Encyclopaedia Britannica 2006 Ultimate Reference Suite DVD)

ଆସନ୍ତୁ ଦେଖିବା କୁରଆନରେ ଈଶ୍ୱରବାଦର କିଭଳି ଶିକ୍ଷା ରହିଛି ।

ପବିତ୍ର କୁରଆନ କହେ -

قُلْ هُوَ اللَّهُ أَحَدٌ ① اللَّهُ الصَّمَدُ ② لَمْ يَلِدْ وَلَمْ يُولَدْ ③ وَلَمْ يَكُن لَّهُ كُفُوًا أَحَدٌ ④

( Al-Qur'an 112 : 1-4 )

**ଭାବାର୍ଥ :-** (ସେମାନଙ୍କୁ) କହିଦିଅ ! ସେ ଅଲ୍ଲାହ୍ ଏକ ଅଟନ୍ତି । ସେ କାହା ଉପରେ ନିର୍ଭରଶୀଳ ନୁହଁନ୍ତି (ସମସ୍ତେ ତାଙ୍କ ଉପରେ ନିର୍ଭରଶୀଳ) । ତାଙ୍କ ଠାରୁ କେହି ଜନ୍ମ ନେଇନାହିଁ ଏବଂ ତାଙ୍କୁ କେହି ଜନ୍ମ ଦେଇ ନାହିଁ ଏବଂ କେହି ତାଙ୍କର ସମକକ୍ଷ ନୁହେଁ ।

لَوْ كَانَ فِيهِمَا آلِهَةٌ إِلَّا اللَّهُ لَفَسَدَتَا فَسُبْحَانَ اللَّهِ رَبِّ الْعَرْشِ عَمَّا يَصِفُونَ ㉒

( Al-Qur'an 21 : 22 )

**ଭାବାର୍ଥ :-** ଯଦି ଆକାଶ ଓ ପୃଥିବୀରେ ଏକ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଉପାସ୍ୟ ମଧ୍ୟ ଥାଆନ୍ତେ ତେବେ ଉଭୟର ଅବସ୍ଥା ବିପର୍ଯ୍ୟସ୍ତ ହୋଇପଡ଼ନ୍ତା । ସୁତରାଂ ସିଂହାସନ ଅଧିକାରୀ ଅଲ୍ଲାହ୍ ସେହି ସବୁ

କଥାରୁ ପବିତ୍ର ଯାହା ସେମାନେ କହୁଅଛନ୍ତି ।

إِنَّ هَٰذِهِۦٓ أُمَّتُكُمْ أُمَّةً وَٰحِدَةً وَأَنَا۠ رَبُّكُمْ فَٱعْبُدُونِ ﴿٩٢﴾

( Al-Qur'an 21 : 92 )

**ଭାବାର୍ଥ :-** ତୁମ୍ଭମାନଙ୍କର ଏହି ସଂପ୍ରଦାୟ ସମୂହ, ବାସ୍ତବରେ ଗୋଟିଏ ସଂପ୍ରଦାୟ (ମାନବ ସମାଜ) ଏବଂ ଆମ୍ଭେ ତୁମ୍ଭମାନଙ୍କର ପାଳନକର୍ତ୍ତା ଅଟୁଁ, ସୁତରାଂ ତୁମ୍ଭେମାନେ ଆମ୍ଭର ହିଁ ଉପାସନା କର ।

قُلْ إِنَّ صَلَاتِى وَنُسُكِى وَمَحْيَاىَ وَمَمَاتِى لِلَّهِ رَبِّ ٱلْعَٰلَمِينَ ﴿١٦٢﴾
لَا شَرِيكَ لَهُۥ ۖ وَبِذَٰلِكَ أُمِرْتُ وَأَنَا۠ أَوَّلُ ٱلْمُسْلِمِينَ ﴿١٦٣﴾

( Al-Qur'an 6 : 162-163 )



**ଭାବାର୍ଥ :-** (ହେ ମୁହମ୍ମଦ) ତୁମ୍ଭେ ସେମାନଙ୍କୁ କହି ଦିଅ ଯେ ମୋର ନମାଜ (ପ୍ରାର୍ଥନା), ମୋର ସମସ୍ତ ଉପାସନା, ମୋର ଜୀବନ-ମରଣ ସବୁ କିଛି ଜଗତର ପାଳନକର୍ତ୍ତା ଅଲ୍ଲାହ୍‌ଙ୍କ ପାଇଁ ଉଦ୍ଦିଷ୍ଟ ଅଟେ । ତାଙ୍କର କେହି ଭାଗୀଦାର ନୁହଁନ୍ତି ଆଉ ମୋତେ ଏହାରହିଁ ଆଦେଶ ଦିଆଯାଇଛି ଏବଂ ମୁଁ ସର୍ବପ୍ରଥମ ଆଜ୍ଞାବହ ଅଟେ ।

وَمَآ أَرْسَلْنَا مِن قَبْلِكَ مِن رَّسُولٍ إِلَّا نُوحِىٓ إِلَيْهِ أَنَّهُۥ لَآ إِلَٰهَ
إِلَّآ أَنَا۠ فَٱعْبُدُونِ ﴿٢٥﴾

( Al-Qur'an 21 : 25 )

**ଭାବାର୍ଥ :-** (ହେ ମୁହମ୍ମଦ) ଏବଂ ଆମ୍ଭେ ତୁମ ପୂର୍ବରୁ ଯେତେ ଜଣ ରସୁଲ୍ (ଦିବ୍ୟ ବାର୍ତ୍ତାବାହକ) ପ୍ରେରଣ କରିଅଛୁ, ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଆମ୍ଭେ ଏହାହିଁ ଉଦ୍ଦିଷ୍ଟ କରିଥିଲୁ ଯେ ଆମ୍ଭ ବ୍ୟତୀତ କେହି ଉପାସନା ଯୋଗ୍ୟ ନୁହଁ ! ଏଣୁ ଆମ୍ଭର ହିଁ ଉପାସନା କର ।

وَإِذَا سَأَلَكَ
عِبَادِي عَنِّي فَإِنِّي قَرِيبٌ أُجِيبُ دَعْوَةَ الدَّاعِ إِذَا دَعَانِ
فَلْيَسْتَجِيبُوا لِي وَلْيُؤْمِنُوا بِي لَعَلَّهُمْ يَرْشُدُونَ ١٨٦

( Al-Qur'an 2 : 186 )

**ଭାବାର୍ଥ :-** ଆଉ (ହେ ମୁହମ୍ମଦ), ଯଦି ମୋ ଭକ୍ତମାନେ ତୁମକୁ ମୋ ସମ୍ବନ୍ଧରେ ପଚାରନ୍ତି ତେବେ ତାଙ୍କୁ କହିଦିଅ ଯେ ମୁଁ ତ ତାଙ୍କର ଅତି ନିକଟରେ ରହିଛି । ଯେବେବି କେହି ପ୍ରାର୍ଥନାକାରୀ ମୋତେ ଡ଼ାକେ ମୁଁ ତା ପ୍ରାର୍ଥନାକୁ ଗ୍ରହଣ କରିଥାଏ । ଏଣୁ ମୋ ଆଦେଶ ଗ୍ରହଣ କରିବା ଏବଂ ମୋ ପ୍ରତି ବିଶ୍ୱାସ ସ୍ଥାପନ କରିବା ତାଙ୍କ ପକ୍ଷେ ବିଧେୟ, ଫଳରେ ସେମାନେ ସତ୍‌ପଥଗାମୀ ହେବେ ।

وَالَّذِينَ تَدْعُونَ مِنْ دُونِهِ لَا يَسْتَطِيعُونَ نَصْرَكُمْ وَلَا
أَنْفُسَهُمْ يَنْصُرُونَ ١٩٧

( Al-Qur'an 7 : 197 )



**ଭାବାର୍ଥ :-** ଆଉ ତାହାଙ୍କ ବ୍ୟତୀତ ତୁମେମାନେ ଯେଉଁମାନଙ୍କୁ ଡ଼ାକୁଅଛ, ତୁମ୍ଭମାନଙ୍କୁ (କୌଣସି ପ୍ରକାର) ସାହାଯ୍ୟ କରିବାର ସେମାନଙ୍କର ସାମର୍ଥ୍ୟ ନାହିଁ ଏବଂ ସେମାନେ ନିଜକୁ ମଧ୍ୟ ସାହାଯ୍ୟ କରିବାପାଇଁ ସମର୍ଥ ନୁହନ୍ତି ।

مَا تَعْبُدُونَ مِنْ دُونِهِ إِلَّا أَسْمَاءً سَمَّيْتُمُوهَا أَنْتُمْ
وَآبَاؤُكُمْ مَا أَنْزَلَ اللَّهُ بِهَا مِنْ سُلْطَانٍ إِنِ الْحُكْمُ إِلَّا لِلَّهِ
أَمَرَ أَلَّا تَعْبُدُوا إِلَّا إِيَّاهُ ذَٰلِكَ الدِّينُ الْقَيِّمُ وَلَٰكِنَّ أَكْثَرَ
النَّاسِ لَا يَعْلَمُونَ ٤٠

( Al-Qur'an 12 : 40 )

**ଭାବାର୍ଥ :-** ତାଙ୍କ ବ୍ୟତୀତ ତୁମେ ଯାହାଙ୍କର ପୂଜା-ଅର୍ଚ୍ଚନା କରୁଅଛ,

ସେଗୁଡ଼ିକ କେବଳ କେତୋଟି (କାଳ୍ପନିକ) ନାମ ଛଡ଼ା ଆଉ କିଛି ନୁହେଁ, ଯାହାକୁ ତୁମେ ଓ ତୁମର ପିତୃ-ପିତାମହ ଗଢ଼ିଅଛ । ଅଲ୍ଲାହ୍ ସେମାନଙ୍କ ପାଇଁ କୌଣସି ପ୍ରମାଣ ପ୍ରେରଣ କରି ନାହାନ୍ତି । ଆଦେଶ ଦେବା ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାର ଅଧିକାର ନୁହଁ ଏବଂ ସେ ଏହା ଆଦେଶ ଦେଇଛନ୍ତି ଯେ ତାଙ୍କ ବ୍ୟତୀତ ଅନ୍ୟ କାହାରି ସେବା-ଉପାସନା କରନାହିଁ । ଏହାହିଁ ସଠିକ୍ ଧର୍ମ, ମାତ୍ର ଅଧିକାଂଶ ଲୋକ (ଏହା) ଜାଣନ୍ତି ନାହିଁ ।

وَيَعْبُدُونَ مِن دُونِ ٱللَّهِ
مَا لَا يَضُرُّهُمْ وَلَا يَنفَعُهُمْ وَيَقُولُونَ هَٰٓؤُلَآءِ شُفَعَٰٓؤُنَا
عِندَ ٱللَّهِ قُلْ أَتُنَبِّـُٔونَ ٱللَّهَ بِمَا لَا يَعْلَمُ فِى ٱلسَّمَٰوَٰتِ وَلَا
فِى ٱلْأَرْضِ سُبْحَٰنَهُۥ وَتَعَٰلَىٰ عَمَّا يُشْرِكُونَ ﴿١٨﴾

( Al-Qur'an 10 : 18 )

**ଭାବାର୍ଥ :-** ଏବଂ ଏମାନେ ଅଲ୍ଲାହଙ୍କ ବ୍ୟତୀତ ଯେଉଁମାନଙ୍କର ଉପାସନା କରନ୍ତି, ସେମାନେ ତାଙ୍କର ନା କୌଣସି ଅନିଷ୍ଟ କରି ପାରନ୍ତି, ନା କୌଣସି ଉପକାର କରିପାରନ୍ତି, ଆଉ ସେମାନେ କୁହନ୍ତି "ଏମାନେ ଅଲ୍ଲାହ୍‌ଙ୍କ ନିକଟରେ ଆମର ମଧ୍ୟସ୍ଥ (ସୁପାରିଶକାରୀ) ହେବେ" । (ସେମାନଙ୍କୁ) କୁହ 'କଣ ତୁମେ ଅଲ୍ଲାହ୍‌ଙ୍କୁ ଏଭଳି କଥା ବିଷୟରେ ସୂଚନା ଦେଉଅଛ ଯାହାର ଅସ୍ତିତ୍ୱ ଆକାଶ ଓ ପୃଥିବୀରେ ଥିବାର ସେ ଜାଣନ୍ତି ନାହିଁ ?" ସେ ପବିତ୍ର ଏବଂ ସେମାନଙ୍କର ସହଭାଗୀତା ଠାରୁ ବହୁତ ଉର୍ଦ୍ଧ୍ୱରେ ।

قُلْ أَرَءَيْتُم مَّا تَدْعُونَ مِن
دُونِ ٱللَّهِ أَرُونِى مَاذَا خَلَقُوا۟ مِنَ ٱلْأَرْضِ أَمْ لَهُمْ شِرْكٌ فِى ٱلسَّمَٰوَٰتِ
ٱئْتُونِى بِكِتَٰبٍ مِّن قَبْلِ هَٰذَآ أَوْ أَثَٰرَةٍ مِّنْ عِلْمٍ إِن كُنتُمْ
صَٰدِقِينَ ﴿٤﴾

( Al-Qur'an 46 : 4 ).

**ଭାବାର୍ଥ :-** ତୁମେ କୁହ ''ଭଲା କୁହ ତ, ଯାହାଙ୍କୁ ତୁମେ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ଡ଼ାକୁଛ, ମୋତେ ମଧ୍ଧ ଟିକେ ଦେଖାଅ ଯେ ସେମାନେ ଭୂପୃଷ୍ଠର କେଉଁ କେଉଁ ବସ୍ତୁ ସୃଷ୍ଟି କରିଛନ୍ତି, କିମ୍ବା ଆକାଶ ମଣ୍ଡଳର ରଚ଼ନା ଓ ପରିଚାଳନାରେ ସେମାନଙ୍କର କି ପ୍ରକାର ଭାଗିଦାରୀ ଅଛି ? ଯଦି ତୁମେ ସତ୍ୟବାଦୀ, ତେବେ ତୁମ ପାଖରେ ଏଥିପୂର୍ବରୁ ଅବତ୍ତୀର୍ଣ୍ଣ ହୋଇଥିବା କୌଣସି ଗ୍ରନ୍ଥ କିମ୍ବା ଜ୍ଞାନ ଭିତ୍ତିକ କୌଣସି ପ୍ରମାଣ ଥିଲେ ମୋ ନିକଟରେ ଉପସ୍ଥାପନ କର ।''

ସମସ୍ତ ଦିବ୍ୟଗ୍ରନ୍ଥଧାରୀ ମାନଙ୍କୁ ଆମନ୍ତ୍ରଣ ଜଣାଇ କୁର୍‌ଆନ୍ କହୁଛି :-

قُلْ يَٰٓأَهْلَ ٱلْكِتَٰبِ تَعَالَوْا۟ إِلَىٰ كَلِمَةٍ سَوَآءٍۭ بَيْنَنَا وَبَيْنَكُمْ
أَلَّا نَعْبُدَ إِلَّا ٱللَّهَ وَلَا نُشْرِكَ بِهِۦ شَيْـًٔا وَلَا يَتَّخِذَ بَعْضُنَا
بَعْضًا أَرْبَابًا مِّن دُونِ ٱللَّهِ ۚ فَإِن تَوَلَّوْا۟ فَقُولُوا۟ ٱشْهَدُوا۟ بِأَنَّا
مُسْلِمُونَ ﴿٦٤﴾



( Al-Qur'an 3 : 64 )

**ଭାବାର୍ଥ :-** କୁହ ! ହେ ଗ୍ରନ୍ଥଧାରୀ ମାନେ, (ଅନ୍ତତଃ) ଆସ ଏପରି ଏକ (ନ୍ୟାୟୋଚ଼ିତ) କଥା ପ୍ରତି ଯାହା ଆମ ଓ ତୁମ ମଧ୍ୟରେ ସମାନ ଭାବରେ ଗୃହିତ (ଏବଂ ତାହା ହେଉଛି) ଏହି ଯେ ଆମେମାନେ ଅଲ୍ଲାହ୍‌ଙ୍କ ବ୍ୟତୀତ ଆଉ କାହାରି ଉପାସନା କରିବା ନାହିଁ ଏବଂ ଅନ୍ୟ କୌଣସି ବସ୍ତୁକୁ ତାହାଙ୍କ ସହିତ ସମକକ୍ଷ କରିବା ନାହିଁ ଏବଂ ଆମ ଭିତରୁ କେହି କାହାରିକୁ ଅଲ୍ଲାହ୍‌ଙ୍କ ବ୍ୟତୀତ ନିଜର ପ୍ରଭୁ କରିବ ନାହିଁ । ଯଦି ସେମାନେ ନ ମାନନ୍ତି ତେବେ ପରିଷ୍କାର କହି ଦିଅ ଯେ ତୁମେମାନେ ସାକ୍ଷୀ ରୁହ, ଆମେ ଈଶ୍ୱରଙ୍କର ଆଜ୍ଞାଧୀନ ଅଟୁ ।

ଉପରୋକ୍ତ ଆଲୋଚ଼ନାରୁ ଆମେ ଅବଗତ ହେଲୁ ଯେ କୁରଆନ ମଧ୍ଧ ଇଶରବାଦର ସେହି ଶିକ୍ଷା ପଦାନ କରଛି ଯାହା ବେଦ ଏବଂ ବାଇବଲରେ ରହିଛି ।

କୁରଆନ କୌଣସି ନୂତନ ଶିକ୍ଷା ବହନ କରିଥିବା ଏକ ଅଦ୍ଭୁତ ଧର୍ମଗ୍ରନ୍ଥ ନୁହେଁ କିମ୍ବା ମହାମାନ୍ୟ ଧର୍ମଦୂତ ମୁହମ୍ମଦ କୌଣସି ନୂତନ ଧର୍ମର ପ୍ରତିଷ୍ଠାତା ନୁହନ୍ତି । କୁରଆନ ଆମ ସେଇ ପରମେଶ୍ୱରଙ୍କର ଦିବ୍ୟବାଣୀ ଯାହାଙ୍କର ବାଣୀ ବହନ କରି ପୃଥିବୀର ବିଭିନ୍ନ କୋଣରେ ଅନେକ ଧର୍ମଗ୍ରନ୍ଥର ଅବତରଣ ହୋଇଛି । ଏହା ପୂର୍ବପ୍ରେରିତ ଗ୍ରନ୍ଥମାନଙ୍କରେ ହୋଇ ଯାଇଥିବା ଅପଭ୍ରଂଶକୁ ସୁଧାରିବା ପାଇଁ, ଦିବ୍ୟଧର୍ମକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ତଥା ସ୍ୱର୍ଗୀୟ ଶିକ୍ଷାକୁ ଚିରଦିନ ଲାଗି ସୁରକ୍ଷିତ କରିବା ପାଇଁ ପ୍ରକଟିତ ହେଲା । ଏହାହିଁ ଅନ୍ତିମ ବେଦ ଏବଂ ଏହାହିଁ ଅନ୍ତିମ ବାଇବେଲ୍ ।

ବିଭିନ୍ନ କାଳରେ ଧର୍ମଗ୍ରନ୍ଥ ଗୁଡ଼ିକରେ ମନୁଷ୍ୟ ମାନେ ପରିବର୍ତ୍ତନ ଆଣିବା ଯୋଗୁଁ ସ୍ୱର୍ଗୀୟ ଶିକ୍ଷା ବିକୃତ ହୋଇ ପଡ଼ିଥିଲା ଯାହା ଫଳରେ ମାନବ ପରିବାରର ଚିନ୍ତାଧାରା ଏବଂ ଆଚରଣରେ ମଧ୍ୟ ବିକୃତି ଆସିଥିଲା । ଏଣୁ ଅସୀମ କରୁଣାମୟ ପରିମେଶ୍ୱର ବିପଥଗାମୀ ମାନବ ସମାଜର ପଥ ପ୍ରଦର୍ଶନ ପାଇଁ ପୁନଶ୍ଚ ଦିବ୍ୟଧର୍ମର ସେହି ମୌଳିକ ଜୀବନ-ଶୈଳୀକୁ ପବିତ୍ର କୁରଆନ ମାଧ୍ୟମରେ ପହଞ୍ଚାଇ ଦେଲେ ଏବଂ ସ୍ୱୟଂ ନିଜେ ହିଁ ଏହି ଗ୍ରନ୍ଥଟିର ସୁରକ୍ଷାର ଦାୟିତ୍ୱ ବହନ କଲେ । ଏଥି ସହିତ ସେ ଏହି ଗ୍ରନ୍ଥଟିକୁ ସ୍ୱର୍ଗୀୟ ଧର୍ମ ଧାରାର ଅନ୍ତିମ ପ୍ରକାଶନ ରୂପେ ଘୋଷଣା କଲେ ।

କୁରଆନ ମାନବ ରଚନା ନୁହେଁ । ମହାମାନ୍ୟ ମୁହମ୍ମଦଙ୍କ ଜୀବନୀ ପଢ଼ିଲେ ଜଣାଯାଏ ଯେ ସେ ଲେଖା ପଢ଼ା ମଧ୍ୟ ଜାଣି ନଥିଲେ । ସମାଜରେ ଜଣେ ସାଧୁ, ଦୟାବାନ ଏବଂ ସଚ୍ଚୋଟ ବ୍ୟକ୍ତି ଭାବରେ ତାଙ୍କର ସୁଖ୍ୟାତି ଥିଲା । ଜନ୍ମର ୪୦ ବର୍ଷ ପରେ ଯେଉଁ ବାଣୀ ତାଙ୍କ ମୁଖରୁ ପ୍ରକଟିତ ହେବା ଆରମ୍ଭ ହେଲା, ସେଭଳି ଉଚ୍ଚକୋଟୀର ବାଣୀ ତାଙ୍କ ମୁଖରୁ କେହି କେବେ ଶୁଣି ନଥିଲେ । ତାଙ୍କ ନିଜ ବାଣୀ ଏବଂ ଦିବ୍ୟବାଣୀ, ଉଭୟ ତାଙ୍କରି ମୁଖରୁ ହିଁ ନିସୃତ ଏବଂ 'ହଦିସ୍' ଏବଂ 'କୁର୍ଆନ୍' ରୂପେ ଏବେ ମଧ୍ୟ ସୁରକ୍ଷିତ ରହିଛି । କିନ୍ତୁ ଦୁଇଟି ପ୍ରକାରର ବାଣୀ ଗୋଟିଏ ମୁଖରୁ ନିସୃତ ହୋଇଥିଲେ ସୁଦ୍ଧା ସେଥିରେ ଆକାଶ ଓ ପାତାଳର ପ୍ରଭେଦ ରହିଛି । କାରଣ କୌଣସି ମାନବ ପକ୍ଷରେ ଈଶ୍ୱର ବାଣୀ ରଚନା କରିବା ସଂଭବ ନୁହେଁ ।

କୁର୍‌ଆନ୍‌ର ଏହି ସତ୍ୟତାକୁ Encyclopaedia Britannica ମଧ୍ୟ ବର୍ଣ୍ଣନା କରିଛି :-

"The Qur'an itself is a miracle and cannot be imitated by man."

(Qur'an - Encyclopaedia Britannica 2006 Ultimate Reference Suite DVD)

ପବିତ୍ର କୁର୍‌ଆନ୍‌ରେ ମଧ୍ୟ ଈଶ୍ୱର ଏହା ଘୋଷଣା କରିଛନ୍ତି :-

قُل لَّئِنِ اجْتَمَعَتِ الْإِنسُ وَالْجِنُّ عَلَىٰ أَن يَأْتُوا بِمِثْلِ هَٰذَا الْقُرْآنِ
لَا يَأْتُونَ بِمِثْلِهِ وَلَوْ كَانَ بَعْضُهُمْ لِبَعْضٍ ظَهِيرًا ﴿٨٨﴾

( Al-Qur'an 17 : 88 )

**ଭାବାର୍ଥ :-** (ସେମାନଙ୍କୁ) କୁହ, ଯଦି ସମସ୍ତ ମାନବ ଏବଂ ଜିନ୍* ଏହି କୁରଆନ୍‌ର ଅନୁରୂପ ଗ୍ରନ୍ଥ ଆଣିବାକୁ ଏକତ୍ରିତ ହୁଅନ୍ତି ଏବଂ ସେମାନେ ପରସ୍ପରକୁ ସାହାଯ୍ୟ ମଧ୍ୟ କରନ୍ତି, ତଥାପି ସେମାନେ ଏହାର ଅନୁରୂପ (ଗ୍ରନ୍ଥ) ଆଣିପାରିବେ ନାହିଁ ।

---

* ଏକ ଅଦୃଶ୍ୟ ପ୍ରାଣୀ ।

# ଇସ୍‌ଲାମରେ ପ୍ରତିମା ପୂଜା ନାହିଁ

ଇସ୍‌ଲାମରେ ନିରାକାର ଈଶ୍ୱରଙ୍କର ଉପାସନା କରାଯାଏ । ଆମେ ଦେଖୁ ଯେ ବେଦରେ ମଧ୍ୟ ପ୍ରତିମା ପୂଜାର ଶିକ୍ଷା ଦିଆଯାଇନାହିଁ । ବରଂ ବେଦ ମଧ୍ୟ ଏହାର ବିରୋଧ କରନ୍ତି । ଯଜୁର୍ବେଦ ସ୍ପଷ୍ଟ ଘୋଷଣା କରୁଛି -

''ନ ତସ୍ୟ ପ୍ରତିମା ଅସ୍ତି''

( Yajur Veda, Khanda-2, Adhyaya - 32, Sloka No. 3 )

ଅର୍ଥାତ୍ ସେହି ଈଶ୍ୱରଙ୍କର କୌଣସି ପ୍ରତିକୃତି ନାହିଁ । ସଂପୂର୍ଣ୍ଣ ଶ୍ଳୋକଟିର ଭାବାର୍ଥଟି ଏହିପରି :-



**ଭାବାର୍ଥ :-** ''ହେ ମନୁଷ୍ୟଗଣ ! ଯେ କେବେ ଦେହଧାରୀ ହୋଇନାହାନ୍ତି, ଯାହାଙ୍କର କିଛି ମାତ୍ର ପରିମାଣ ସୀମାର କାରଣ ନାହିଁ, ଯାହାଙ୍କର ଆଜ୍ଞାର ପାଳନ ନାମ ସ୍ମରଣ ଅଟେ, ଯେ ଉପାସିତ ହୋଇ ନିଜର ଉପାସକମାନଙ୍କ ଉପରେ ଅନୁଗ୍ରହ କରୁଥନ୍ତି, ବେଦର ଅନେକ ସ୍ଥଳରେ ଯାହାଙ୍କର ମହତ୍ତ୍ୱ କୁହାଯାଇଛି, ଯେ ମରନ୍ତି ନାହିଁ, ବିକୃତ ହୁଅନ୍ତି ନାହିଁ, ନଷ୍ଟ ହୁଅନ୍ତି ନାହିଁ ତାହାଙ୍କର ଉପାସନା ତୁମ୍ଭେମାନେ ନିରନ୍ତର କର । ଯେ ଏହାଙ୍କଠାରୁ ଭିନ୍ନଙ୍କର ଉପାସନା କରିବ ସେ ମହାନ୍ ପାପଦ୍ୱାରା ଯୁକ୍ତ ହୋଇ ନିଜେ ଦୁଃଖ କ୍ଳେଶରେ ନଷ୍ଟ ହୋଇଯିବ ।''

( Yajur Veda, Khanda-2, Adhyaya - 32, Sloka No. 3 )

ଏହି କାରଣରୁ ଆମେ ଦେଖୁ ଯେ ହିନ୍ଦୁ ସମାଜର ଏକାଧିକ ସଂପ୍ରଦାୟ କେବଳ ଏକ ନିରାକାର ଈଶ୍ୱରଙ୍କର ଉପାସନା କରନ୍ତି ।

ବ୍ରହ୍ମ ସମାଜର ପ୍ରତିଷ୍ଠାତା ରାଜା ରାମମୋହନ ରାୟ (୧୭୭୨-୧୮୩୩) ଏବଂ ଆର୍ଯ୍ୟ ସମାଜର ପ୍ରତିଷ୍ଠାତା ପଣ୍ଡିତ ଦୟାନନ୍ଦ ସରସ୍ୱତୀ (୧୮୨୪-୧୮୮୩) ସମାଜରେ ମୂର୍ତ୍ତିପୂଜାର ବିରୋଧ କରିଥିଲେ । ବ୍ରହ୍ମସମାଜର କର୍ମକର୍ତ୍ତା ମହର୍ଷି ଦେବେନ୍ଦ୍ର ନାଥ ଠାକୁର ଏବଂ ତାଙ୍କ ପୁତ୍ର କବି ରବିନ୍ଦ୍ରନାଥ ଠାକୁର ମଧ୍ୟ ଏକେଶ୍ୱରବାଦର ପ୍ରସାର ପାଇଁ ପ୍ରଯତ୍ନ କରିଥିଲେ । କିନ୍ତୁ କେତେକ ଲୋକ ମତ ଦିଅନ୍ତି ଯେ ଈଶ୍ୱର ଅବଶ୍ୟ ନିରାକାର କିନ୍ତୁ ପ୍ରତିମା ଧ୍ୟାନ୍ କେନ୍ଦ୍ରିତ କରିବା ପାଇଁ ଏକ ମାଧ୍ୟମ ମାତ୍ର । ଅର୍ଥାତ୍ ସେମାନଙ୍କ ମତରେ କୌଣସି ମାଧ୍ୟମ ବିନା ଈଶ୍ୱରଙ୍କ ସହିତ ସଂପର୍କ ସ୍ଥାପନ ସଂଭବ ନୁହେଁ । ଏହା କୌଣସି ବ୍ୟକ୍ତି ବିଶେଷଙ୍କର ମତ ହୋଇପାରେ କିନ୍ତୁ ଈଶ୍ୱର ଆଦେଶ ନୁହେଁ । ଏହା ମଧ୍ୟ ସତ୍ୟ ନୁହେଁ ଯେ ବିନା ମାଧ୍ୟମରେ ଈଶ୍ୱରଙ୍କର ଉପାସନା ସଂଭବ ନୁହେଁ । କାରଣ ବିପଦ ସମୟରେ ବା ଡ଼ାକ୍ତରଖାନାର ଅପରେସନ ଟେବୁଲ ଉପରେ ଈଶ୍ୱରଙ୍କ ସହିତ ଆମ ସଂପର୍କ କୌଣସି ମାଧ୍ୟମ ବିନା ସ୍ଥାପିତ ହୋଇଯାଏ । ବିପତ୍ତି ସମୟରେ କେହି ଏକ ସାକାର ପ୍ରତିମାର ଆବଶ୍ୟକତା ଉପଲବ୍ଧି କରନ୍ତି ନାହିଁ, ବରଂ କେବଳ ଅନ୍ତରରୁ ପ୍ରଭୁଙ୍କ ନିକଟରେ ଗୁହାରି ଜଣାଇ ସାହାଯ୍ୟ ଭିକ୍ଷା କରନ୍ତି ।

ଯେଉଁ ଈଶ୍ୱର କୌଣସି ମାଧ୍ୟମ ବ୍ୟତୀତ ବିପଦ ବେଳେ ମନୁଷ୍ୟର ଡ଼ାକ ଶୁଣି ପାରନ୍ତି ଏବଂ ସାହାଯ୍ୟ ମଧ୍ୟ କରିପାରନ୍ତି, ତାଙ୍କୁ ଅନ୍ୟ ସମୟରେ ଡ଼ାକିଲେ କଣ ସେ ଶୁଣିବେ ନାହିଁ ?

ମନୁଷ୍ୟ ଛଡ଼ା ଅନ୍ୟ ଜୀବଜନ୍ତୁ ପ୍ରତିମା ଗଢ଼ନ୍ତି ନାହିଁ । ସେମାନେ ବିପଦବେଳେ ଈଶ୍ୱରଙ୍କୁ କିପରି ଡ଼ାକନ୍ତି ? ପ୍ରକୃତ ଭକ୍ତ ଈଶ୍ୱରଙ୍କ ନିୟମକୁ ମାନିନିଏ, ନିଜେ ନିୟମ ଗଢ଼େ ନାହିଁ । ବୈଦିକ ଯୁଗରେ ମଧ୍ୟ ମୂର୍ତ୍ତିପୂଜା ନଥିଲା । R.C. Dutta ଙ୍କ ଅନୁସାରେ ପ୍ରତିମାପୂଜା ଅନେକ ପରେ ଆରମ୍ଭ ହେଲା* - (A History of Civilization in India, Vol. 3)

ମହାମାନ୍ୟ ମୁହମ୍ମଦ ନିଜର ସାମାନ୍ୟ ଚିତ୍ରଟିଏ ପ୍ରସ୍ତୁତ କରିବା ପାଇଁ ମଧ୍ୟ ଅନୁମତି ଦେଇ ନାହାନ୍ତି କାରଣ ତାଙ୍କର ଆଶଙ୍କା ଥିଲା ହୁଏତ ତାଙ୍କ ପରେ ତାଙ୍କ ଅନୁଗାମୀମାନେ ତାଙ୍କ ଚିତ୍ରକୁ ପୂଜା କରିବା ଆରମ୍ଭ କରିଦେବେ ।

---

* 'Kalki Avatar and Muhammed' by Dr. Ved Prakash Upaddhyay

ବାଇବଲରେ ବର୍ଣ୍ଣନା କରାଯାଇଛି ଯେ ମହାମାନ୍ୟ ଈଶ୍ୱରଦୂତ ମୁସାଙ୍କ (Moses) ସମୟରେ ତାଙ୍କ ଅନୁଗାମୀ ମାନଙ୍କୁ ଈଶ୍ୱରଙ୍କର ଦଶଗୋଟି ବିଶେଷ ଆଜ୍ଞା ପାଳନ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ଏହାକୁ "Ten Commandments" କୁହାଯାଏ । ଏଥି ମଧ୍ୟରୁ ଈଶ୍ୱରଙ୍କର ସର୍ବପ୍ରଥମ ଆଦେଶଟି ଏହିପରି ଥିଲା :-

''ଆମ୍ଭ ସାକ୍ଷାତରେ ତୁମ୍ଭର ଆଉ କୌଣସି ଦେବତା ହେବ ନାହିଁ । ତୁମ୍ଭେ ଆପଣା ନିମନ୍ତେ କୌଣସି ଖୋଦିତ ପ୍ରତିମା ନିର୍ମାଣ କରିବ ନାହିଁ, କି ଉପରିସ୍ଥ ସ୍ୱର୍ଗରେ, କି ନୀଚସ୍ଥ ପୃଥିବୀରେ, କି ପୃଥିବୀର ନୀଚସ୍ଥ ଜଳରେ ଥିବା କୌଣସି ବସ୍ତୁର ପ୍ରତିମୂର୍ତ୍ତି ନିର୍ମାଣ କରିବ ନାହିଁ ।

ତୁମ୍ଭେ ସେମାନଙ୍କୁ ପ୍ରଣାମ କରିବ ନାହିଁ, କି ସେମାନଙ୍କର ସେବା କରିବ ନାହିଁ, ଯେହେତୁ ଆମ୍ଭେ ତୁମ୍ଭର ସଦାପ୍ରଭୁ ପରମେଶ୍ୱର ସ୍ୱଗୌରବ-ରକ୍ଷଣରେ ଉଦ୍‌ଯୋଗୀ ପରମେଶ୍ୱର ଅଟୁ ।

( Book of Exodus, Ch. No. 20, Verse No. 3-5 )



କୁରଆନ ମଧ୍ୟ ସେହି ଶିକ୍ଷା ଦିଏ -

لَيْسَ كَمِثْلِهِ شَيْءٌ

**ଭାବାର୍ଥ :-** କୌଣସି ବସ୍ତୁ ତାଙ୍କ ସଦୃଶ ନୁହେଁ ।

( Al-Qur'an 42 : 11 )

# ଅନ୍ୟର ଉପାସନା କ୍ଷମଣୀୟ ନୁହେଁ

ଉପରୋକ୍ତ ଆଲୋଚ଼ନାରୁ ଆମେ ଅବଗତ ହେଲୁ ଯେ ଈଶ୍ୱରଙ୍କ ସଂରଚ଼ିତ ଧର୍ମରେ ଅଣ-ଈଶ୍ୱରଙ୍କର ଉପାସନା ଯୁଗେ ଯୁଗେ ନିଷିଦ୍ଧ ରହିଛି । ପୂର୍ବରୁ.ଆମେ ପଢ଼ି ସାରିଛୁ ଯେ ବେଦ ଏହି କର୍ମକୁ ''ମହାପାପ'' କହୁଛନ୍ତି (ଯଜୁର୍ବେଦ ୩୨-୩) ଏବଂ ଏହା ମଧ୍ୟ ସଚ଼େତନ କରୁଛନ୍ତି ଯେ ''ଅନ୍ୟ କାହାର ଉପାସନା କରି ଈଶ୍ୱରଙ୍କ ଉପାସନାର ଫଳ ଚାହିଁଲେ ତାହା କଦାପି ମିଳି ପାରେ ନାହିଁ । (ରଗବେଦ, ପ୍ରଥମ ଭାଗ, ଦ୍ୱିତୀୟ ଅଧ୍ୟାୟ, ସୁକ୍ତ ସଂଖ୍ୟା ୧୪, ଶ୍ଳୋକ ସଂଖ୍ୟା ୩ର ଭାବାର୍ଥ) । କୁର୍ଆନ୍ କହେ ଯେ ପରମେଶ୍ୱରଙ୍କ ଉପାସନାରେ କାହାରିକୁ ଭାଗୀଦାର କଲେ ଅନ୍ୟାନ୍ୟ ପୁଣ୍ୟକର୍ମ ସବୁ ବ୍ୟର୍ଥ ହୋଇଯିବ ଏବଂ ଏ ବିଷୟରେ ପ୍ରତ୍ୟେକ ଯୁଗରେ ମାର୍ଗଦର୍ଶକ ମାନଙ୍କ ମାଧ୍ୟମରେ ସତର୍କ କରି ଦିଆଯାଇଛି ।



وَلَقَدْ أُوحِيَ إِلَيْكَ وَإِلَى الَّذِينَ مِن قَبْلِكَ لَئِنْ
أَشْرَكْتَ لَيَحْبَطَنَّ عَمَلُكَ وَلَتَكُونَنَّ مِنَ الْخَاسِرِينَ ٦٥

( Al-Qur'an 39 : 65 )

**ଭାବାର୍ଥ :-** (ହେ ମହମ୍ମଦ) ଅବଶ୍ୟ, ତୁମ୍ଭ ପ୍ରତି ଓ ତୁମ୍ଭ ପୂର୍ବବର୍ତ୍ତୀ ସମସ୍ତ (ଧର୍ମଦୂତ)ଙ୍କ ପ୍ରତି ଏହି ଆଦିଷ୍ଟ ବାଣୀ (ଦିବ୍ୟବାଣୀ) ପ୍ରେରିତ ହୋଇ ସାରିଛି ଯେ ''ଯଦି ତୁମ୍ଭେ ଅଲ୍ଲାହଙ୍କ ସହ ଆଉ କାହାରିକୁ ଭାଗୀଦାର କରିବ ତାହେଲେ ତୁମର ସକଳ କର୍ମ ବ୍ୟର୍ଥ ହୋଇଯିବ ଏବଂ ତୁମେ ନିଶ୍ଚୟ କ୍ଷତିଗ୍ରସ୍ତ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଯିବ ।

କେତେକ ଲୋକ ଆଶ୍ଚର୍ଯ୍ୟ ହୁଅନ୍ତି ଯେ ଏପରି ଅପାର କରୁଣାମୟ ପରମେଶ୍ୱର କେବଳ ଅନ୍ୟର କିଛିଟା ପୂଜା-ଅର୍ଚ୍ଚନା କରି ନେବା ଯୋଗୁଁ, ମନୁଷ୍ୟର ଅନ୍ୟାନ୍ୟ

ସତକର୍ମ ଗୁଡିକୁ କିପରି ବ୍ୟର୍ଥ କରିଦେବେ ?  ଏହାର କାରଣଟି ଅତି ସ୍ପଷ୍ଟ ।  ପୂଜା-ଉପାସନା (ଇବାଦତ୍) ଈଶ୍ୱରଙ୍କର ଅଧିକାର ।  ଏହା ଅନ୍ୟକୁ ପ୍ରଦାନ କରିବା ତାଙ୍କ ପ୍ରତି ଘୋର ଅନ୍ୟାୟ ।

ଜଣେ ପ୍ରଜାବତ୍ସଳ ରାଜା ଚାହିଁଲେ କୌଣସି ପ୍ରଜାର ସମସ୍ତ ଅପରାଧ କ୍ଷମା କରିଦେଇ ପାରନ୍ତି ।  କିନ୍ତୁ ଗୋଟିଏ ଅପରାଧ କ୍ଷମା କରନ୍ତି ନାହିଁ ।  ଯଦି ସେ ତାଙ୍କ ସହିତ କୃତଘ୍ନତା କରେ, ଅନ୍ୟକୁ ତାଙ୍କ ଆସନରେ ଅଭିଷିକ୍ତ କରିବାକୁ ଉଦ୍ୟମ କରେ ବା ଅନ୍ୟକୁ ରାଜା ବୋଲି ସ୍ୱୀକାର କରେ, କିମ୍ବା ରାଜାଙ୍କ ଉପସ୍ଥିତିରେ ଅନ୍ୟ କାହାରିକୁ ରାଜାତୁଲ୍ୟ ସମ୍ମାନ ପ୍ରଦର୍ଶନ କରି ନିଜର ଆନୁଗତ୍ୟ ପ୍ରକାଶ କରେ, ତେବେ ରାଜା ତାକୁ କଠୋର ଦଣ୍ଡ ଦିଅନ୍ତି ।  ସେ ପ୍ରଜାଟିର ଭଦ୍ରାମି, ଦାନଶୀଳତା, ଦୟା ପରାୟଣତା କିମ୍ବା ଦେଶ ପାଇଁ କରିଥିବା ଅନ୍ୟାନ୍ୟ ସେବା ଗୁଡ଼ିକୁ ବିଚାରକୁ ନିଅନ୍ତି ନାହିଁ କାରଣ ସେ ରାଜଦ୍ରୋହର ଅପରାଧ କଲା ।

ସେହିପରି ଜଣେ ପତ୍ନୀର ସମସ୍ତ ଅପରାଧ ତା ସ୍ୱାମୀ ଚାହିଁଲେ କ୍ଷମା କରି ଦେଇ ପାରେ ।  କିନ୍ତୁ ପତ୍ନୀ ଯଦି ଅନ୍ୟ କାହାରି ସହିତ ସ୍ୱାମୀତୁଲ୍ୟ ବ୍ୟବହାର କରେ, ତାକୁ ସ୍ୱାମୀର ଅସନ ଦିଏ ବା ସ୍ୱାମୀର ଅଧିକାର ପ୍ରଦାନ କରେ, ତେବେ ସେହି ପତ୍ନୀ ଜଣକ ଯେତେ ସୁନ୍ଦରୀ, ଶିକ୍ଷିତା ବା ସୁଗୁଣ ସଂପନ୍ନା ହେଉ ନା କାହିଁକି, ସ୍ୱାମୀ ତାକୁ କ୍ଷମା କରେ ନାହିଁ ।  ନିଜ ପତ୍ନୀର ବର୍ଷ ବର୍ଷର ସେବାଯତ୍ନ ତା ପାଇଁ ମୂଲ୍ୟହୀନ ହୋଇପଡ଼େ ।  ଠିକ୍ ସେହିପରି, ଯଦି ମନୁଷ୍ୟ ତାର ସ୍ରଷ୍ଟାଙ୍କର ଅଧିକାରକୁ ସୃଷ୍ଟିର ଅନ୍ୟ କାହାରିକୁ ପ୍ରଦାନ କରେ, ତେବେ ସେ ତାର ଅନ୍ୟ କୌଣସି ପୁଣ୍ୟକର୍ମ ଗ୍ରହଣ କରନ୍ତି ନାହିଁ କିମ୍ବା ତାକୁ କ୍ଷମା କରନ୍ତି ନାହିଁ ।

ଆମ ଈଶ୍ୱର ଅନନ୍ତ ଶକ୍ତିମାନ, ଅଦ୍ୱିତୀୟ ଏବଂ ଅନୁପମ ।  ତାଙ୍କର ମହିମା ଏପରି ଯେ କେବଳ କୃପା ଭିକ୍ଷା କରିବା ଛଡ଼ା ବଳ ପୂର୍ବକ ତାଙ୍କ ନିକଟରୁ କୌଣସି କାର୍ଯ୍ୟ କରାଇ ନେବା କିମ୍ବା ତାଙ୍କ ନିଷ୍ପତ୍ତିରେ କୌଣସି ପରିବର୍ତ୍ତନ କରାଇ ନେବା ମହାମାନ୍ୟ ଧର୍ମଦୂତ (ପୈଗମ୍ବର), ପୁରୁଷୋତ୍ତମ କିମ୍ବା ସ୍ୱର୍ଗଦୂତଙ୍କ ପକ୍ଷରେ ମଧ

ସମ୍ଭବ ନୁହେଁ । ଏହି କାରଣରୁ ତ୍ରାଣକର୍ତ୍ତା ବା ଉପାସ୍ୟ ମନେକରି ଏକ ନିରାକାର ଅଲ୍ଲାହ୍ ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାରିକୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ କରାଯାଉଥିବା ଉପାସନାଜନିତ ସମସ୍ତ କର୍ମକାଣ୍ଡ ଗୁଡ଼ିକୁ ଇସଲାମ ଗୋଟି ଗୋଟି କରି ନିଷିଦ୍ଧ କରି ଦେଇଛି ।

# ଈଶ୍ୱରଙ୍କର ନାମ

ପ୍ରାୟ ପ୍ରତ୍ୟେକ ମନୁଷ୍ୟ, ସେ ଯେ କୌଣସି ଧର୍ମାବଲମ୍ବୀ ହୋଇଥାଉ ନା କାହିଁକି, ଏହା ଉପଲବ୍ଧି କରେ ଯେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ ଜଣେ ଅଦୃଶ୍ୟ ମହାଶକ୍ତିଙ୍କ ଦ୍ୱାରା ପରିଚାଳିତ ତଥା ନିୟନ୍ତ୍ରିତ । ତାଙ୍କରି ଦ୍ୱାରା ହିଁ ସକଳ ଜୀବଙ୍କର ଭାଗ୍ୟ ନିର୍ଦ୍ଧାରିତ ହୁଏ ଏବଂ ସେଇ ହିଁ ସମସ୍ତଙ୍କର ଈଶ୍ୱର "ବୃହତ୍ ଓଡ଼ିଆ ଅଭିଧାନ ଅନୁସାରେ ଈଶ୍ୱର ଅର୍ଥ 'God' ବା "the Lord of the Universe" ଅର୍ଥାତ୍ 'ବ୍ରହ୍ମାଣ୍ଡର ଅଧିପତି' ।"*



ଏହି ଚରମ ସତ୍ୟଟିକୁ କୌଣସି ବୁଦ୍ଧିମାନ ବ୍ୟକ୍ତି ବା ସମାଜ କେବେ ହେଲେ ଅସ୍ୱୀକାର କରିନାହିଁ । ଅବଶ୍ୟ ବିଭିନ୍ନ ନାମରେ ତାଙ୍କୁ ସମ୍ବୋଧିତ କରାଯାଏ ଯଥା - ଈଶ୍ୱର, ପରମେଶ୍ୱର, ପରମାତ୍ମା, ଭଗବାନ, ପ୍ରଭୁ, ଖୁଦା, ଯେହୋବା, God, ଏଲାହ (Elah), ଏଲୋହିମ୍ (Elohim) ଏବଂ ଅଲ୍ଲାହ୍ ଇତ୍ୟାଦି । ବ୍ରହ୍ମା, ବିଷ୍ଣୁ ଏବଂ ମହେଶ୍ୱର (ସ୍ରଷ୍ଟା, ପାଳନକର୍ତ୍ତା ଏବଂ ସଂହାର କର୍ତ୍ତା) ମଧ୍ୟ ସେହି ଈଶ୍ୱରଙ୍କର ତିନିଗୋଟି ବିଶିଷ୍ଟ ଗୁଣକୁ ପ୍ରକାଶ କରୁଥିବା ନାମ (attributes) ଯାହା ବିଷୟରେ ଆମେ ପୂର୍ବ ବର୍ଣ୍ଣିତ ବେଦର ଶ୍ଲୋକ ମାନଙ୍କରୁ ଅବଗତ ହେଲୁ ।

ପୃଥିବୀରେ ଏମିତି କୌଣସି ଭାଷା ନାହିଁ ଯେଉଁଥିରେ ଈଶ୍ୱରଙ୍କୁ ସମ୍ବୋଧନ କରିବା ପାଇଁ ନାମଟିଏ ନାହିଁ । ବିଭିନ୍ନ ଅଞ୍ଚଳର ଭାଷା ଅନୁସାରେ ନାଁ ରେ ମଧ୍ୟ

---

* ବୃହତ୍ ଓଡ଼ିଆ ଅଭିଧାନ - ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ।

ତଫାତ ରହିଛି । ଭାଷା ଅନେକ କିନ୍ତୁ ଆମ ପ୍ରଭୁ ଏକ । ଜଣେ ବିଶିଷ୍ଟ ବିଦ୍ୱାନ, Dr. A. H. Vidyarthi ନିଜ ପ୍ରସିଦ୍ଧ ପୁସ୍ତକ "Muhammed in World Scriptures" ରେ ଈଶ୍ୱରଙ୍କୁ ସଂବୋଧିତ କରିବା ପାଇଁ ବ୍ୟବହାର ହେଉଥିବା ୧୧୫ ଗୋଟି ନାମର ବର୍ଣ୍ଣନା କରିଛନ୍ତି ।

ରଗବେଦରେ ଉଲ୍ଲେଖ ଅଛି -

''ଏକମ୍ ସଦ୍, ବିପ୍ରା ବହୁଧା ବଦନ୍ତି''

ଅର୍ଥାତ୍ ସତ୍ୟ ଗୋଟିଏ, ସାଧୁସନ୍ଥ ମାନେ ଏକ ଈଶ୍ୱରଙ୍କୁ ଅନେକ ନାମରେ ଡ଼ାକନ୍ତି ।

( Rig Veda, 1-164-46 )

କୁରଆନ୍ ମଧ୍ୟ କହେ -

قُلِ ادْعُوا اللَّهَ أَوِ ادْعُوا الرَّحْمَٰنَ ۖ أَيًّا مَّا تَدْعُوا فَلَهُ الْأَسْمَاءُ الْحُسْنَىٰ

( Al-Qur'an 17 : 110 )

**ଭାବାର୍ଥ :-** ତୁମେ (ସେମାନଙ୍କୁ) କୁହ, ''ଅଲ୍ଲାହ ନାମରେ ଡ଼ାକ କିମ୍ବା 'ଦୟାମୟ' ନାମରେ, ଯେଉଁ ନାମରେ ତୁମେମାନେ ଡ଼ାକିଲେ ମଧ୍ୟ ସମସ୍ତ ଭଲନାମ ତାଙ୍କରି ପାଇଁ ଉଦ୍ଦିଷ୍ଟ ।

କୁରଆନରେ ଏକ ଈଶ୍ୱରଙ୍କର ଅନେକ ନାମ ରହିଛି । ଯଥା - ଅର୍-ରହିମ (ଅର୍ଥାତ୍ ଦୟାମୟ), ଅର୍-ରହମାନ (ଅପାର କରୁଣାମୟ), ଅସ୍-ସଲାମ (ମଙ୍ଗଳମୟ), ଅଲ୍-ଖାଲିକ୍ (ସୃଷ୍ଟିକର୍ତ୍ତା), ଅର୍-ରବ୍ (ପାଳନ କର୍ତ୍ତା) ଇତ୍ୟାଦି । ଅଲ୍ଲାହ ମଧ୍ୟ ଈଶ୍ୱରଙ୍କର ଏକ ନାମ ଏବଂ ଏହା ଈଶ୍ୱରଙ୍କର ବ୍ୟକ୍ତିଗତ ନାମ । ଏହି ନାମଟିର ଅନେକ ବିଶେଷତ୍ୱ ରହିଛି । ଏହାର ଓଡ଼ିଆ ଅନୁବାଦ ''କେବଳ ମାତ୍ର ଉପାସ୍ୟ'' ।

ଯେପରି ଇଂରାଜୀ ଭାଷାରେ 'The' ଶବ୍ଦଟି ନିର୍ଦ୍ଦିଷ୍ଟତାକୁ ବୁଝାଏ, ସେହିପରି ଆରବୀ ଭାଷାରେ 'ଅଲ୍' ଶବ୍ଦଟି ନିର୍ଦ୍ଦିଷ୍ଟତାକୁ ବୁଝାଏ । 'House' ଅର୍ଥ ଘର । କିନ୍ତୁ 'The House' କହିଲେ ଏକ ନିର୍ଦ୍ଦିଷ୍ଟ ଘରକୁ ହିଁ ବୁଝାଏ । ସେହିପରି ଆରବୀରେ 'ଇଲାହ୍' ଅର୍ଥ ଉପାସ୍ୟ, 'ଇଲାହ୍' ପୂର୍ବରୁ 'ଅଲ୍' ସଂଯୋଗ କଲେ 'ଅଲ + ଇଲାହ୍' ବା 'ଅଲ୍ଲାହ୍' ହେବ ଯାହାର ଅର୍ଥ ଏକ ନିର୍ଦ୍ଦିଷ୍ଟ ଉପାସ୍ୟ ।

ଏହି ଶବ୍ଦଟିର ଏକ ବିଶେଷତ୍ୱ ହେଉଛି ଯେ ଏହାର ପୂର୍ବେ କିମ୍ବା ପରେ କୌଣସି ଅକ୍ଷର ସଂଯୋଗ କରି ଏହାକୁ ବଦଳା ଯାଇ ପାରିବ ନାହିଁ ।

ଉଦାହରଣ ସ୍ୱରୂପ - God ଶବ୍ଦରେ 's' ଯୋଗ କରି Gods କରାଯାଇପାରେ, 'ess' ଯୋଗ କରି 'Goddess' କରାଯାଇପାରେ । ଈଶ୍ୱର ଶବ୍ଦରୁ ନାଗେଶ୍ୱର; 'ଭଗବାନ'ରୁ ଭଗବତୀ ଠାକୁରରୁ ଠାକୁରାଣୀ ମଧ୍ୟ କରାଯାଏ । ଏହିପରି ଅନ୍ୟମାନଙ୍କୁ ଈଶ୍ୱର କରାଯାଇଛି ଏବଂ ଲୋକେ ତାଙ୍କର ଉପାସନା ମଧ୍ୟ କରିଛନ୍ତି । କିନ୍ତୁ 'ଅଲ୍ଲାହ୍' ଶବ୍ଦଟିର ଲିଙ୍ଗ ଏବଂ ବଚନ ପରିବର୍ତ୍ତନଶୀଳ ନୁହେଁ । ଏହା ଏକ ଅନୁପମ ନାମ ଯାହାକୁ ବିକୃତ କରାଯିବା ସମ୍ଭବ ନୁହେଁ । ଏହି କାରଣ ଯୋଗୁ କୁରଆନରେ ଈଶ୍ୱରଙ୍କ ପାଇଁ ଅଧିକାଂଶ ସ୍ଥାନରେ 'ଅଲ୍ଲାହ' ଶବ୍ଦ ପ୍ରୟୋଗ ହୋଇଛି । ଏହି ପୁସ୍ତକର ଯେଉଁଠି ଈଶ୍ୱର ବା ପରମେଶ୍ୱର ଶବ୍ଦ ବ୍ୟବହାର ହୋଇଛି ତାହା ପାଠକ ପାଠିକା ମାନଙ୍କର ବୁଝିବା ନିମନ୍ତେ ବ୍ୟବହୃତ ହୋଇଛି ଅନ୍ୟଥା 'ଅଲ୍ଲାହ୍' ଶବ୍ଦଟି ଅନୁପମ । 'ଖୁଦା' ନାମ ମଧ୍ୟ 'ଅଲ୍ଲାହ୍' ଶବ୍ଦର ସଠିକ୍ ଅନୁବାଦ ନୁହେଁ । ପୃଥିବୀର କୌଣସି ଭାଷାରେ ଏପରି ଏକ ଶବ୍ଦ ନାହିଁ ଯାହା ଏହାର ସଂପୂର୍ଣ୍ଣ ଅର୍ଥକୁ ପ୍ରକାଶ କରିପାରିବ । ଲିଙ୍ଗ ଏବଂ ବଚନର ଅପରିବର୍ତ୍ତନୀୟତାର ଗୁଣ ସହିତ ଈଶ୍ୱରଙ୍କର ସମସ୍ତ ବିଶେଷତ୍ୱ (attributes) ଗୁଡ଼ିକୁ ଏକକାଳୀନ ଧାରଣ କରିଥିବା ଏହି ସୁନ୍ଦର ନାମଟିର କୌଣସି ବିକଳ୍ପ ନାହିଁ ।

# ଅଲ୍ଲୋପନିଷଦରେ ଅଲ୍ଲାହ୍ ଶବ୍ଦ ଦ୍ୱାରା ଈଶ୍ୱରଙ୍କର ସ୍ତୁତି

'ଅଲ୍ଲାହ୍' ନାମଟି କୌଣସି ଅଦ୍ଭୁତ ନାମ ନୁହେଁ । ହଜାର ହଜାର ବର୍ଷର ପ୍ରାଚୀନ ବୈଦିକ ଗ୍ରନ୍ଥ ମଧ୍ୟରେ ମଧ୍ୟ ଈଶ୍ୱରଙ୍କୁ 'ଅଲ୍ଲାହ' ନାମରେ ସମ୍ବୋଧନ କରାଯାଇଛି । ହିନ୍ଦୁ ଧର୍ମରେ ବେଦ ଭଳି ଉପନିଷଦର ମଧ୍ୟ ଯଥେଷ୍ଟ ପ୍ରାଧାନ୍ୟ ରହିଛି, ଅଥର୍ବ ବେଦରେ 'ଅଲ୍ଲୋପନିଷଦ' ନାମରେ ଏକ ଉପନିଷଦ ଅଛି, ଯେଉଁଥିରେ ଈଶ୍ୱରଙ୍କର ନାମ 'ଅଲ୍ଲାହ' ବୋଲି ଉଲ୍ଲେଖ ରହିଛି ।

ଜଣେ ବିଶିଷ୍ଟ ହିନ୍ଦୁ ପଣ୍ଡିତ, ଶ୍ରୀ ନଗେନ୍ଦ୍ର ନାଥ ବସୁ 'ବିଶ୍ୱକୋଷ' (Encyclopaedia Indica) ନାମକ ଏକ ପୁସ୍ତକ ରଚନା କରିଛନ୍ତି । କଲିକତାରୁ ପ୍ରକାଶିତ ଏହି ପୁସ୍ତକର ଦ୍ୱିତୀୟ ଖଣ୍ଡରେ ସେ ଅଲ୍ଲୋପନିଷଦ ଉଦ୍ଧୃତ କରି ଲେଖିଛନ୍ତି ଯେ ଏଥିରେ ପରମେଶ୍ୱରଙ୍କର ସ୍ତୁତି କରାଯାଇଛି ଏବଂ 'ଅଲ୍ଲାହ୍' ପରମେଶ୍ୱର ବା ବ୍ରହ୍ମାଙ୍କର ନାମ । A.H. Vidyarthi ତାଙ୍କ ପ୍ରସିଦ୍ଧ ପୁସ୍ତକ "Muhammad in World Scriptures" – (Vol.3) ରେ ମଧ୍ୟ ଅଲ୍ଲୋପନିଷଦ ଉଦ୍ଧୃତ କରିଛନ୍ତି । ଅଲ୍ଲୋପନିଷଦର ଫଟୋଚିତ୍ର ପରବର୍ତ୍ତୀ ପୃଷ୍ଠାରେ ଦିଆଯାଇଛି ।

ଏହା ବ୍ୟତୀତ ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ସଂଗୃହୀତ ଏବଂ ୧୯୩୧ ମସିହାରେ ଉତ୍କଳ ସାହିତ୍ୟ ପ୍ରେସ, କଟକରୁ ପ୍ରକାଶିତ ପ୍ରସିଦ୍ଧ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରେ ମଧ୍ୟ ଅଲ୍ଲୋପନିଷଦ ସ୍ଥାନ ପାଇଛି ଯାହାର ଫଟୋ କପି ପୃ-୪୮ ରେ ଉଦ୍ଧୃତ କରାଯାଉଛି ।* କିନ୍ତୁ ଏଥିରେ ସୁକ୍ତଟିର ପ୍ରଥମ ଧାଡ଼ିଟି ନାହିଁ ।

---

* ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ପୃ:୬୦୫

**Allopanishad**

# અથ અલ્લો ઉપનિષદ્

हरिः ॐ वरुणम् दिव्यान् धत्ते इल्लल्ले
मित्र हीं अस्माल्लां इल्लल्ले मित्रा वरुणा
दिव्यानि धत्ते इल्लल्ले वरुणो राजा
पुनर्ददुः । हयामि मित्रो इल्लां इल्लल्ले
इल्लां वरुण मित्रा तेजकामः ( १ )

हुं होतारमिन्द्रां होता इन्द्रां राम
हासुरिन्द्रा ॥ अल्लो ज्येष्टं श्रेष्टं परमं पूर्णं
ब्रह्मण अल्लाम ॥ २ ॥

हां अल्लां रसूल महमद रकबरस्य
अल्लो अल्लां आदल्लाबूमेककं अल्लाबूकं
निखातकम ॥ ३ ॥

अल्लो यज्ञेन हुत्वा अल्ला सूर्य चन्द्र
सर्व नक्षत्रा अल्लो ऋषीणां सर्वदिव्या
इन्द्राय पूर्वं माया परमं अंतरीक्षा ॥४॥

अल्लो पृथिव्यामिमते इल्लल्ले वरुणो
राजा पुनर्ददुः ॥ इल्लल्लं कबर इल्लां रक-
बर इल्लां इल्लेति इल्लल्ले ॥ ५ ॥

हरिः ॐ अस्य इल्लां इल्लल्लं मित्रा
वरुणो राजा पूर्णं वपुः ॥ हयामि मित्रो
इल्लां रकबर इल्लां रसूल महमद रकब-
रस्य अल्लो अल्लां पूर्णं वपुः ॥ ६ ॥

अल्ला इल्लल्ला अनादि स्वरूपाय अथ-
र्वणी श्यामां ह्रीं जनान् पशु सिद्धान् जल-
चरान् अदृष्टं कुरु कुरु फट् असुर संहा-
रिणी हां अल्ला रसूल महमद रकबरस्य
अल्लो अल्लां इल्लल्लेति इल्लल्लाः ॥ ७ ॥

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ସ୍ଥାନ ପାଇଥିବା ଅଲ୍ଲୋପନିଷଦ

ଅଲ୍ଲୋପନିଷଦ — ସଂ. ବି. — ଅଥର୍ବ ବେଦରେ 'ଅଲ୍ଲା' ଶବ୍ଦଦ୍ୱାର
Allopanishada ପରମେଶ୍ୱରଙ୍କୁ ନିର୍ଦ୍ଦେଶ କରି ଲେଖା ହୁଦା
ନିମ୍ନଲିଖିତ ସୂକ୍ତ।

ଅହ୍ଲାଂ ଇଲ୍ଲେ ମିତ୍ରାବରୁଣା ଦିବ୍ୟାନି ଧତ୍ତେ
ଇଲ୍ଲଲ୍ଲେ ବରୁଣୋ ରାଜା ପୁନର୍ଦ୍ଦୁଃ
ହୟାମି ମିତ୍ରୋ ଇଲ୍ଲାଂ ଇଲ୍ଲଲ୍ଲେ ଇଲ୍ଲାଂ
ବରୁଣୋ ମିତ୍ର ସ୍ତେଜସ୍କାମଃ
ହୋତାରମିନ୍ଦ୍ରୋ ହୋତାରମିନ୍ଦ୍ରେ ମହାସୁରିନ୍ଦ୍ରାଃ
ଅଲ୍ଲୋ ଜ୍ୟେଷ୍ଠଂ ଶ୍ରେଷ୍ଠଂ ପରମଂ ପୂର୍ଣ୍ଣଂ ବ୍ରହ୍ମାଣଂ ଅଲ୍ଲାମ୍ ॥
ଅଲ୍ଲୋରସୂଲ ମହାମଦରକଂ ବରସ୍ୟ ଅଲ୍ଲୋ ଅଲ୍ଲାଂ
ଆଦଲ୍ଲାବୁକମେକକଂ, ଅଲ୍ଲାବୁକ ନିଖାତକଂ । ୧ ।
ଅଲ୍ଲୋ ଯଜ୍ଞେନ ହୁତହୁତ୍ୱା ଅଲ୍ଲା ସୂର୍ଯ୍ୟଚନ୍ଦ୍ର ସର୍ବନକ୍ଷତ୍ରାଃ
ଅଲ୍ଲା ଋଷୀଣାଂ ସର୍ବଦିବ୍ୟା ଇନ୍ଦ୍ରାୟ ପୂର୍ବଂ ମାୟା ପରମନ୍ତରିକ୍ଷାଃ
ଅଲ୍ଲଃ ପୃଥିବ୍ୟା ଅନ୍ତରିକ୍ଷଂ ବିଶ୍ୱରୂପଂ
ଇଲ୍ଲାଂକବର ଇଲ୍ଲାଂକବର ଇଲ୍ଲା ଇଲ୍ଲା ଇଲ୍ଲଲ୍ଲେତି ଇଲ୍ଲଲ୍ଲାଂ
ଓଁ ଅଲ୍ଲା ଇଲ୍ଲଲ୍ଲା ଅନାଦିସ୍ୱରୂପାୟ
ଅଥର୍ବାଣଂ ଶ୍ୟାମାହୁଂ ହ୍ରୀଂ.
ଜନାନ୍ ପଶୂନ୍ ସିଦ୍ଧାନ୍ ଜଲଚରାନ୍ ଅଦୃଷ୍ଟଂକୁରୁ ଫଟ୍
ଅସୁର ସଂହାରିଣୀ ହୁଂ ହ୍ରୀଂ ଅଲ୍ଲୋ
ରସୂଲ ମହମ୍ମଦରକଂ ବରସ୍ୟ
ଅଲ୍ଲୋ ଅଲ୍ଲାମ୍ ଇଲ୍ଲଲ୍ଲେତି ଇଲ୍ଲଲ୍ଲା । ୧୦ ।

ଅଲ୍ଲୋପନିଷଦର ଇଂରାଜୀ ଅନୁବାଦଟି ଏହିପରି :-

"The name of the Deity is Allah. He is one, Mitra,Varuna etc are His attributes; and Allah indeed is Varuna who is the king of the world. Ye friends, look upon and regard such Allah as your Deity. He is Varuna and like friends, sets right the works of all people. He is Indra, the magnificent Indra. Allah is the greatest of all, the best, the most perfect, and the holiest of all. Muhamad, the Apostle of Allah is the greatest Messenger of Allah. Allah is alpha, and Allah is Omega, and Allah indeed is the Nourisher of the whole world. For Allah are the noble deeds. Allah, in fact, has created the sun, the moon and the stars.

Allah sent all the Rishis, and created the sun, the moon and the stars. Allah sent all the Rishis, and created the heavens. Allah is the Manifester of the earth and the space. Allah is Great, and there is no God but He. Say, thou worshipper (Atharva Rishi) ***'La-i-laha-illa-Allah'***. Allah is from the beginning. He is the Nourisher of all the birds and beasts and animals that live in the sea, and those that are not visible to the eye. He is the Remover of all evils and calamities.

Muhammad is the Apostle of Allah, the Lord of this creation. Hence, declare : ***Allah is One, and there is no other god besides Him."***

ଏହାର ଓଡ଼ିଆ ଅନୁବାଦ ନିମ୍ନରେ ଦିଆଗଲା :-

## ଅଲ୍ଲୋପନିଷଦ

''ସେହି ଉପାସ୍ୟଙ୍କର ନାମ ଅଲ୍ଲାହ୍ । ସେ ମାତ୍ର ଜଣେ । ମିତ୍ର, ବରୁଣ ଇତ୍ୟାଦି ତାଙ୍କରି ଗୁଣ ପ୍ରକାଶ କରୁଥିବା ନାମ (Attibutes) ଏବଂ ଅଲ୍ଲାହ ପ୍ରକୃତରେ ବରୁଣ ଯିଏ ସକଳ ଜଗତର ଅଧିପତି । ହେ ବନ୍ଧୁ - ସେହି ଅଲ୍ଲାହଙ୍କୁ ନିଜର ଉପାସ୍ୟ ଭାବରେ ଗ୍ରହଣ କର । ସେହି ବରୁଣ ଏବଂ ମିତ୍ର ଭଳି ସଭିଙ୍କର କାର୍ଯ୍ୟସିଦ୍ଧି କରନ୍ତି । ସେ ଇନ୍ଦ୍ର, (ଜଗତର) ପ୍ରକାଶକ ଇନ୍ଦ୍ର । ଅଲ୍ଲାହ ସମସ୍ତଙ୍କ ଠାରୁ ବଡ଼ ଏବଂ ସର୍ବୋତ୍ତମ, ସର୍ବ ସଂମ୍ପୂର୍ଣ୍ଣ ଏବଂ ସମସ୍ତଙ୍କ ଠାରୁ ପବିତ୍ରତ୍ତମ । ମୁହମ୍ମଦ[ସ] ଅଲ୍ଲାହଙ୍କର ରସୁଲ (ଦିବ୍ୟ ବାର୍ତ୍ତାବାହକ) ଏବଂ ଅଲ୍ଲାହଙ୍କର ସର୍ବଶ୍ରେଷ୍ଠ ଧର୍ମଦୂତ । ଅଲ୍ଲାହ୍ ଅନାଦି ଏବଂ ଅଲ୍ଲାହ ଅନନ୍ତ ଏବଂ ଅଲ୍ଲାହ ହିଁ ବାସ୍ତବରେ ସକଳ ଜଗତର ପାଳନକର୍ତ୍ତା । ଅଲ୍ଲାହ୍ଙ୍କ ପାଇଁ ହିଁ ସମସ୍ତ ପବିତ୍ର କର୍ମ, ଅଲ୍ଲାହ ହିଁ ସୂର୍ଯ୍ୟ, ଚ଼ନ୍ଦ୍ର ଏବଂ ତାରା ସୃଷ୍ଟି କଲେ ।



ଅଲ୍ଲାହ ହିଁ ସମସ୍ତ ଋଷିଙ୍କୁ ପ୍ରେରଣ କଲେ ଏବଂ ସୂର୍ଯ୍ୟ, ଚ଼ନ୍ଦ୍ର ଓ ତାରା ରଚ଼ନା କଲେ । ଅଲ୍ଲାହ୍ ସବୁ ଋଷିମାନଙ୍କୁ ପ୍ରେରଣ କଲେ ଏବଂ ଆକାଶ ରଚ଼ନା କଲେ । ଅଲ୍ଲାହ୍ ଧରିତ୍ରୀ ଆକାଶର ପ୍ରକାଶକ । ଅଲ୍ଲାହ ମହାନ ଏବଂ ତାଙ୍କ ବ୍ୟତୀତ କେହି ଉପାସ୍ୟ ନୁହେଁ । (ତୁମେ) କୁହ ହେ ଉପାସକ (ଅଥର୍ବ ଋଷି) : ''ଲା ଇଲାହ ଇଲ୍ଲଲ୍ଲାହ'' (ଅଲ୍ଲାହ୍ଙ୍କ ବ୍ୟତୀତ କେହି ଉପାସ୍ୟ ନୁହେଁ) । ଅଲ୍ଲାହ୍ ପ୍ରାରମ୍ଭରୁ ବିଦ୍ୟମାନ, ସେ ସକଳ ପଶୁପକ୍ଷୀ ଓ ପ୍ରାଣୀମାନଙ୍କର ପାଳନକର୍ତ୍ତା ଯିଏ ସମୁଦ୍ରରେ ବାସ କରନ୍ତି ଏବଂ ସେମାନଙ୍କର ମଧ୍ୟ ପାଳନକର୍ତ୍ତା ଯେଉଁମାନେ ଆଖିକୁ ଦେଖାଯାଆନ୍ତି ନାହିଁ । ସେ ସକଳ ଦୁଃଖ ଏବଂ ବିପଦର ହରଣକାରୀ । ମୁହମ୍ମଦ ସେହି ବ୍ରହ୍ମାଣ୍ଡର ପ୍ରଭୁ ଅଲ୍ଲାହଙ୍କର ପ୍ରେରିତ ରସୁଲ (ମାର୍ଗ ଦର୍ଶକ) । ଅତଏବ ତୁମେ ଘୋଷଣା କର ''ଅଲ୍ଲାହ୍ ଏକ ଏବଂ ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହେଁ ।''

ମହାତ୍ମା ଗାନ୍ଧି କହୁଥିଲେ ଯେ 'ଅଲ୍ଲାହ' ଈଶ୍ୱରଙ୍କର ନାମ ।

ଈଶ୍ୱର, ଅଲ୍ଲାହ ତେରୋ ନାମ
ସବକୋ ସନମତି ଦେ ଭଗବାନ ।

ଗାନ୍ଧିଜୀ ନିଜ ପ୍ରାର୍ଥନାରେ କୁର୍‌ଆନ ପାଠ ମଧ୍ୟ କରନ୍ତି । ତାଙ୍କ ପ୍ରାର୍ଥନା ସଭାରେ ଉଭୟ ହିନ୍ଦୁ ଓ ମୁସଲମାନ ଯୋଗ ଦେଉଥିଲେ କିନ୍ତୁ କେତେକ ଅବୁଝା ଲୋକ ତାଙ୍କୁ ବିରୋଧ ମଧ୍ୟ କରୁଥିଲେ । ୧୯୪୭ ମସିହା ଏପ୍ରିଲ ୪ ତାରିଖ ଦିନ ନୂଆଦିଲ୍ଲୀ ଠାରେ ନିଜ ପ୍ରାର୍ଥନା ସଭାରେ ଗାନ୍ଧିଜୀ କହିଥିଲେ :-

> "But no one who belongs to Hinduism can have reason to complain. We have 108 Upanishads. One of them is Allopanishad."

ପ୍ରାର୍ଥନା ସଭା, ନୂଆଦିଲ୍ଲୀ, ତା ୪.୪.୧୯୪୭
(Gandhi Serve Foundation, Website - www.gandhiserve.org)

ଭାରତର ମାନ୍ୟବର ସୁପ୍ରିମକୋର୍ଟ ସଦ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ରାୟରେ କହିଛନ୍ତି :- "Allah is an Arabic word for God" – ଅର୍ଥାତ୍ ଅଲ୍ଲାହ୍ ଏକ ଆରବ ଶବ୍ଦ ଯାହାର ଅର୍ଥ God ବା ଈଶ୍ୱର । ମାନ୍ୟବର କୋର୍ଟ ଏହା ମଧ୍ୟ କହିଛନ୍ତି ଯେ ବିଧାୟକ ତଥା ସାଂସଦଗଣ ଶପଥ ଗ୍ରହଣ ବେଳେ ''ଅଲ୍ଲାହ୍'' ନାମ ଉଚ୍ଚାରଣ କରିବା ସମ୍ବିଧାନ ସମ୍ମତ ।

(ତା ୧୭.୧୧.୨୦୦୭ ର Times of India ଓ ଦୈନିକ ସମାଜରେ ପ୍ରକାଶିତ)

ପାଠକ ବନ୍ଧୁମାନେ ଲକ୍ଷ କରିବେ ଯେ ଅଲ୍ଲୋପନିଷଦରେ ଈଶ୍ୱରଙ୍କର ନାମ, ତାଙ୍କ ପରିଭାଷା, ତାଙ୍କ ପ୍ରେରିତ ଧର୍ମର ମୂଳମନ୍ତ୍ର ଏବଂ ମହାମାନ୍ୟ ମହମ୍ମଦ ଯେ ତାଙ୍କର ପ୍ରେରିତ ରସୁଲ, ଏହା ପରିଷ୍କାର ଭାବରେ ବର୍ଣ୍ଣନା କରାଯାଇଛି ।

ଈଶ୍ୱରଙ୍କ ତରଫରୁ ମନୁଷ୍ୟମାନଙ୍କ ମାର୍ଗ ଦର୍ଶନ ନିମନ୍ତେ ନିଯୁକ୍ତ ପୁରୁଷୋତ୍ତମଙ୍କୁ ଆରବୀ ଭାଷାରେ 'ନବୀ' ବା 'ରସୁଲ' କୁହାଯାଏ । ଇଂରାଜୀରେ ଏମାନଙ୍କୁ Prophet ବା Messenger କୁହାଯାଏ । ଓଡ଼ିଆ ଭାଷାରେ ଏଥିପାଇଁ ଧର୍ମପ୍ରବର୍ତ୍ତକ, ଧର୍ମଦୂତ ଏବଂ ଅବତାର ଶବ୍ଦର ପ୍ରୟୋଗ ହୁଏ । Oxford Dictionary ରେ 'Prophet' ଅର୍ଥ "Person considered as an interpreter of divine Will" ବୋଲି ଉଲ୍ଲେଖ ଅଛି ।

# ମହାମାନ୍ୟ ମୁହମ୍ମଦଙ୍କ ଆଗମନୀ ବିଷୟରେ ଭବିଷ୍ୟବାଣୀ

ଅଲ୍ଲୋପନିଷଦ ବ୍ୟତୀତ ବେଦ, ପୁରାଣ ଏବଂ ବାଇବେଲର ଅନେକ ସ୍ଥାନରେ ମହାମାନ୍ୟ ମୁହମ୍ମଦଙ୍କ ଆଗମନୀ ବିଷୟରେ ସ୍ପଷ୍ଟ ଭବିଷ୍ୟବାଣୀ ରହିଛି । ଉଦାହରଣ ସ୍ୱରୂପ କେତୋଟି ଭବିଷ୍ୟବାଣୀ ବିଷୟରେ ସଂକ୍ଷେପରେ ଆଲୋଚନା କରାଯାଉଛି ।

## ଭବିଷ୍ୟ ପୁରାଣରେ ଭବିଷ୍ୟବାଣୀ

ମହର୍ଷି ବ୍ୟାସଙ୍କ ରଚିତ ଅଠର ପୁରାଣ ମଧ୍ୟରୁ ଗୋଟିଏ ପୁରାଣ ହେଉଛି 'ଭବିଷ୍ୟ ପୁରାଣ' । ଏଥିରେ ନିମ୍ନ ଭବିଷ୍ୟବାଣୀ ରହିଛି :-



एतस्मिन्नन्तिरे म्लेच्छ आचार्येण समन्वितः ।
महामद इति ख्यातः शिष्यशाखासमन्वितः ॥ ५ ॥
नृपश्चैव महादेवं मरुस्थलनिवासिनम् ।
गङ्गाजलैश्च संस्नाप्य पञ्चगव्यसमन्वितैः ।
चंदनादिभिरभ्यर्च्य तुष्टाव मनसा हरम् ॥ ६ ॥

भोजराज उवाच—नमस्ते गिरिजानाथ मरुस्थलनिवासिने ।
त्रिपुरासुरनाशाय बहुमायाप्रवर्त्तिने ॥ ७ ॥
म्लेच्छैर्गुप्ताय शुद्धाय सच्चिदानन्दरूपिणे ।
त्वं मां हि किंकरं विद्धि शरणार्थमुपागतम् ॥ ८ ॥

(Bhavishya Purana, Prati Sarga, Parva-3, Khanda-3, Adhyay-3, Sloka No.- 5-8)

ଏହି ଶ୍ଳୋକଗୁଡ଼ିକର ଇଂରାଜୀ ଅନୁବାଦ ଏହିପରି :-

"A malechha (belonging to a foreign country and speaking foreign language) spiritual teacher will appear with his companions. His name will be **Mohammad**. Raja (Bhoj) after giving this Maha Dev Arab (of angelic disposition) a bath in the 'Panchgavya' and the Ganges water (i.e. purging him of all sins) offered him the presents of his sincere devotion and showing him all reverence said, "I make obeisance to thee, 'O ye ! The pride of mankind, the dweller in Arabia, Ye have collected a great force to kill the Devil and you yourself have been protected from the malechha opponents." 'O Ye ! the image of the Most Pious God the biggest Lord, I am a slave to thee, take me as one lying on thy feet.'

ମହର୍ଷି ବ୍ୟାସ ଏଥିରେ ପରିଷ୍କାର ଭାବରେ ଲେଖିଛନ୍ତି ଯେ :-

୧. ଆଗନ୍ତୁକ ଧର୍ମଦୂତ ବା ଋଷିଙ୍କ ନାମ **'ମହମ୍ମଦ'** ହେବ ।
୨. ସେ ମରୁସ୍ଥଳ ନିବାସୀ ହେବେ ।
୩. ସେ ଦୁଷ୍ଟ ମାନଙ୍କର ବଧ କରିବେ ।
୪. ଶତ୍ରୁମାନଙ୍କ ଠାରୁ ତାଙ୍କୁ ରକ୍ଷା କରାଯିବ ।

ଶ୍ଳୋକ ସଂଖ୍ୟା ୫ ରେ ପରିଷ୍କାର ମହାମାନ୍ୟ ମୁହମ୍ମଦଙ୍କ ନାମ ଉଲ୍ଲେଖ ରହିଛି, କିନ୍ତୁ ତାଙ୍କୁ ଜଣେ ମ୍ଳେଚ୍ଛ ଆଚାର୍ଯ୍ୟ ବୋଲି କୁହାଯାଇଛି । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ସଂସ୍କୃତର 'ମ୍ଳେଚ୍ଛ' ଶବ୍ଦ କୌଣସି ଏକ ଖରାପ ଅର୍ଥବୋଧକ ଶବ୍ଦ ନୁହେଁ ଯେପରିକି ଲୋକମାନଙ୍କର ଧାରଣା ରହିଛି । ଏହି ଶବ୍ଦ ଅଣଆର୍ଯ୍ୟ ମାନଙ୍କ ପାଇଁ ବ୍ୟବହୃତ ହୁଏ ଯେପରି ଅଣ-ଆରବୀୟ ମାନଙ୍କ ପାଇଁ ଆରବୀ ଭାଷାରେ 'ଅଜ୍‌ମୀ' (Ajmi) ଏବଂ ଅଣ-ୟହୁଦୀ ମାନଙ୍କ ପାଇଁ 'ଜେନ୍‌ଟାଇଲ୍' (Gentile) ଶବ୍ଦର ପ୍ରୟୋଗ ହୁଏ ।

ପରବର୍ତ୍ତୀ ଶ୍ଳୋକ ଗୁଡ଼ିକରେ ଏହା ମଧ୍ୟ କୁହାଯାଇଛି ଯେ ମହାମାନ୍ୟ ମୁହମ୍ମଦ ମରୁସ୍ଥଳ ନିବାସୀ ହେବେ ଅର୍ଥାତ୍ ଆରବବାସୀ ହେବେ । ଆଉ ଗୋଟିଏ ଉଲ୍ଲେଖନୀୟ କଥା ଏଠାରେ ଭବିଷ୍ୟ ପୁରାଣ କହୁଛି ଯେ ତାଙ୍କ ଶତ୍ରୁ ମାନଙ୍କ ଠାରୁ ରକ୍ଷା କରାଯିବ ।

ଆମେ ଇତିହାସରୁ ଜାଣୁ ଯେ ମହାମାନ୍ୟ ଧର୍ମଦୂତଙ୍କ ବିରୁଦ୍ଧରେ ତାଙ୍କର ଶତ୍ରୁମାନେ ଅନେକଥର ହତ୍ୟାର ଷଡ଼ଯନ୍ତ୍ର କରିଥିଲେ କିନ୍ତୁ ସବୁଥର ବିଫଳ ହୋଇଥିଲେ । କାରଣ ଈଶ୍ୱର ଶତ୍ରୁମାନଙ୍କ ଠାରୁ ତାଙ୍କୁ ରକ୍ଷା କରିବାର ପ୍ରତିଶ୍ରୁତି ଦେଇଥିଲେ । କୁରଆନ୍‌ରେ ଉଲ୍ଲେଖ ଅଛି :- "ଏବଂ ଅଲ୍ଲାହ୍ ଲୋକମାନଙ୍କ ଠାରୁ ତୁମକୁ (ଅବଶ୍ୟ) ରକ୍ଷା କରିବେ" (କୁରଆନ୍ ୫:୬୭) ।

ଏହି ଅଧ୍ୟାୟର ଶ୍ଳୋକ ସଂଖ୍ୟା ୧୦ ରୁ ୨୭ରେ ନିମ୍ନ ଭବିଷ୍ୟବାଣୀ ରହିଛି:

म्लेच्छैस्सुदूषिता भूमिर्वाहीका नाम विश्रुता ।
आर्य्यधर्मो हि नैवात्र वाहीके देशदारुणे ॥ १० ॥
बाभूवात्र महामायी योऽसौ दग्धो मया पुरा ।
त्रिपुरो बलिदैत्येन प्रेषितः पुनरागतः ॥ ११ ॥
अयोनिः स वरो मत्तः प्राप्तवान्दैत्यवर्द्धनः ।
महामद इति ख्यातः पैशाचकृतितत्परः ॥ १२ ॥
नागन्तव्यं त्वया भूप पैशाचे देशधूर्तके ।
मत्प्रसादेन भूपाल तव शुद्धि प्रजायते ॥ १३ ॥
इति श्रुत्वा नृपश्चैव स्वदेशान्पु नरागमतः ।
महामदश्च तैः सार्द्धं सिंधुतीरमुपाययौ ॥ १४ ॥
उवाच भूपतिं प्रेम्णा मायामदविशारदः ।
तव देवो महाराजा मम दासत्वमागतः ॥ १५ ॥
ममोच्छिष्टं सभुंजीयाद्यथा तत्पश्य भो नृप ।
इति श्रुत्वा तथा दृष्ट्वा परं विस्मयमागतः ॥ १६ ॥
म्लेच्छधर्मे मतिश्चासीत्तस्य भूपस्य दारुणे ॥ १७ ॥
तच्छ्रुत्वा कालिदासस्तु रुषा प्राह महामदम् ।
माया ते निर्मिता धूर्त नृपमोहनहेतवे ॥ १८ ॥

हनिष्यामिदुराचारं वाहीकं पुरुषाधमम् ।
इत्युक्त्वा स जिद्वः श्रीमान्नवार्णजपतत्परः ॥ १९ ॥
जप्त्वा दशसहस्रंच तद्दशांशं जुहाव सः ।
भस्म भूत्वा स मायावी म्लेच्छदेवत्वमागतः ॥ २० ॥
भयभीतास्तु तच्छिष्या देशं वाहीकमाययुः ।
गृहीत्वा स्वगुरोर्भस्म मदहीनत्वामागतम् ॥ २१ ॥

स्थापितं तैश्च भूमध्येतत्रोषुर्मदतत्पराः ।
मदहीनं पुरं जातं तेषां तीर्थं समं स्मृतम् ॥ २२ ॥
रात्रौ स देवरूपश्च बहुमायाविशारदः ।
पैशाचं देहमास्थाय भोजराजं हि सोऽब्रवीत् ॥ २३ ॥
आर्य्यधर्मो हि ते राजन्सर्वधर्मोत्तमः स्मृतः ।
ईशाज्ञया करिष्यामि पैशाचं धर्मदारुणम् ॥ २४ ॥
लिङ्गच्छेदी शिखाहीनः श्मश्रुधारी स दूषकः ।
उच्चालापी सर्वभक्षी भविष्यति जनो मम ॥ २५ ॥
विना कौलं च पशवस्तेषां भक्षया मता मम ।
मुसलेनैव संस्कारः कुशैरिव भविष्यति ॥ २६ ॥
तस्मान्मुसलवन्तो हि जातयो धर्मदूषकाः ।
इति पैशाचधर्मश्च भविष्यति मया कृतः ॥ २७ ॥

(Bhavishya Purana, Prati Sarga, Parva-3,
Khanda-3, Adhyay-3, Sloka No.- 10-27)

"The Malechhas have spoiled the well known land of the Arabs. Arya Dharma is not to be found in that country. Before also there appeared a misguided friend whom I had killed; he has now again appeared being sent by a powerful enemy. To show these enemies the right path and to give

them guidance the well-known **Mahamad** (Mohammad), who has been given by me the epithet of Brahma, is busy in bringing the 'Pishachas' to the right path. O Raja, you need not go to the land of the foolish Pishachas, you will be purified through my kindness even where you are. At night, he of the angelic disposition, the shrewd man, in the guise of a Pischacha said to Raja Bhoj, "O Raja! Your Arya Dharma has been made to prevail over all religions, but according to the commandments of Ishwar Parmatma, I shall enforce the strong creed of the meat-eaters. My follower will be a man circumcised, without a tail (on his head), keeping beard, creating a revolution announcing Adzan (call for prayer) and will be eating all lawful things. He will eat all sorts of animals except swine. They will not seek purification from the holy shrubs, but will be purified through warfare. On account of their fighting the irreligious nations, they will be known as '**Musalmans'**. I shall be the originator of this religion of the meat-eating nation".

ଏହି ଶ୍ଳୋକ ଗୁଡ଼ିକରେ କୁହାଯାଇଛି ଯେ :-

୧. ଦୁରାଚାରୀ ମାନେ ଆରବ ମାଟିକୁ ଦୂଷିତ କରିଛନ୍ତି ।

୨. ସେ ଦେଶରୁ ଆର୍ଯ୍ୟ ଧର୍ମ ଲୋପ ପାଇଯାଇଛି ।

୩. ଧର୍ମଦୂତଙ୍କ ଆବିର୍ଭାବ ଆର୍ଯ୍ୟ ଧର୍ମ ବିଶ୍ୱାସର (ଅର୍ଥାତ୍ ଏକେଶ୍ୱରବାଦ୍ର) ପୁଷ୍ଟି କରିବ ।

୪. ମହାମାନ୍ୟ ମୁହମ୍ମଦ ଦୁରାଚାରୀ ମାନଙ୍କୁ ସତ ମାର୍ଗ ପ୍ରଦର୍ଶନ କରିବେ ଏବଂ ପଥଭ୍ରଷ୍ଟ ମାନଙ୍କୁ ଠିକ ବାଟକୁ ଆଣିବେ ।

୫. ଧର୍ମଦୂତଙ୍କ ଅନୁଗାମୀମାନେ ତ୍ୱକ୍-ଛେଦନ କରିବେ ଅର୍ଥାତ୍ 'ସୁନ୍ନତ୍' ହେବେ ।

୬. ସେମାନେ ମୁଣ୍ଡରେ ଚୁଟି ରଖିବେ ନାହିଁ କିନ୍ତୁ ଦାଢ଼ି ରଖିବେ ଏବଂ ପ୍ରାର୍ଥନା ପାଇଁ ଉଚ୍ଚ ସ୍ୱରରେ ଲୋକମାନଙ୍କୁ ଡ଼ାକିବେ ଅର୍ଥାତ୍ ମସ୍‌ଜିଦରେ ନମାଜ ପାଇଁ ଅଜାନ୍ ଦେବେ ।

୭. ସେମାନେ ସମସ୍ତ ଶୁଦ୍ଧ ଖାଦ୍ୟ ଖାଇବେ କିନ୍ତୁ ଘୁସୁରୀ ମାଂସ ଖାଇବେ ନାହିଁ ।

୮. ସେମାନଙ୍କୁ 'ମୁସଲମାନ' କୁହାଯିବ ।

୯. ସେମାନେ ମାଂସାହାରୀ ହେବେ ।

ଉପରୋକ୍ତ ସମସ୍ତ ଭବିଷ୍ୟବାଣୀ ଗୁଡ଼ିକ ମହାମାନ୍ୟ ଧର୍ମପ୍ରବର୍ତ୍ତକ ମୁହମ୍ମଦ ଏବଂ ତାଙ୍କ ଅନୁଗାମୀ ମାନଙ୍କ ବ୍ୟତୀତ ଅନ୍ୟ କାହାରି ପାଇଁ ପ୍ରଯୁଜ୍ୟ ନୁହେଁ ।

ଭବିଷ୍ୟ ପୁରାଣରେ ମହାମାନ୍ୟ ମହମ୍ମଦଙ୍କ ସମୟରେ ଆର୍ଯ୍ୟ ଧର୍ମର ଅବସ୍ଥା ଏବଂ ଇସଲାମର ବାସ୍ତବତା ବିଷୟରେ ନିମ୍ନ ଭବିଷ୍ୟବାଣୀ ରହିଛି :-



Corruption and persecution are the order of the day in the seven sacred cities of Kashi etc. India is inhabited by Rakshas, Shabar, Bhil and other foolish people. In the land of 'Malechhas', the followers of the 'Malechha dharma' (Islam) are wise and brave people. All good qualities are found in Musalmans and all sorts of vices have accumulated in the land of the Aryas. Islam will rule in India and its islands. Having known these facts O Muni, glorify the name of thy Lord".

( Bhavishya Purana, Parva-3, Khanda-1, Adhyay-4, Sloka - 21-23)

(**Note :–** ପୁରାଣର ଇଂରାଜୀ ଅନୁବାଦ ଗୁଡ଼ିକ A.H. Vidyarthi & U. Ali ଙ୍କ ଦ୍ୱାରା ଲିଖିତ ପୁସ୍ତକ "Muhammad in Parsi, Hindoo and Buddhist Scriptures" ରୁ ଉଦ୍ଧୃତ ଏବଂ ଏଗୁଡ଼ିକ Islamic Research Foundation, Mumbai, Website- www.irf.net ରେ ମଧ୍ୟ ଉପଲବ୍ଧ ।)

# ବେଦରେ ନରାଶଂସ ରୂପେ ଭବିଷ୍ୟବାଣୀ

ବେଦର ଅନେକ ସ୍ଥାନରେ 'ନରାଶଂସ' ନାମକ ଜଣେ ଋଷିଙ୍କ ଆଗମନୀ ବିଷୟରେ ସୂଚନା ଦିଆଯାଇଛି। ସଂସ୍କୃତରେ ବ୍ୟବହୃତ 'ନରାଶଂସ' ଶବ୍ଦର ଅର୍ଥ 'ପ୍ରଶଂସିତ' (the praised one) ଯାହାର ଆରବୀ ଅନୁବାଦ 'ମୁହମ୍ମଦ'। 'ନର' ଅର୍ଥ ମନୁଷ୍ୟ ଏବଂ 'ଆଶଂସ' ଅର୍ଥ ପ୍ରଶଂସିତ। ପଣ୍ଡିତ ବେଦ ପ୍ରକାଶ ଉପାଧ୍ୟାୟ ଲେଖିଛନ୍ତି ଯେ 'ନରାଶଂସ' ଏବଂ 'ମୁହମ୍ମଦ', ଉଭୟର ଏକା ଅର୍ଥ।* ଡ଼ଃ ଉପାଧ୍ୟାୟ ଏହା ମଧ୍ୟ ଲେଖିଛନ୍ତି ଯେ ମୁହମ୍ମଦ ହିଁ ସେହି ଅନ୍ତିମ ଋଷି ଯାହାଙ୍କ ଆଗମନୀ ବିଷୟରେ ବେଦ, ପୁରାଣ, ବାଇବେଲ ଏବଂ ବୌଦ୍ଧ ଧର୍ମଗ୍ରନ୍ଥ ଗୁଡ଼ିକରେ ଭବିଷ୍ୟବାଣୀ କରାଯାଇଛି।

ବେଦରେ ନରାଶଂସଙ୍କ ବିଷୟରେ ନିମ୍ନ ଭବିଷ୍ୟବାଣୀର ଉଲ୍ଲେଖ ରହିଛି:-

୧. ସେ 'ନରାଶଂସ' ବା ପ୍ରଶଂସିତ (ମହମ୍ମଦ)।

(Atharva Veda 20:127:1)

୨. ନରାଶଂସ ଓଟାରୋହଣ କରୁଥିବା ଜଣେ ଋଷି ହେବେ।

(Atharva Veda 20:127:2)

ଏହି ଶ୍ଳୋକଟିରେ ସ୍ପଷ୍ଟ ଉଲ୍ଲେଖ ରହିଛି ଯେ ଆସୁଥିବା ଋଷି ଜଣକ ଭାରତୀୟ ନୁହେଁ, ବରଂ ଆରବୀୟ ହେବେ। ଭବିଷ୍ୟ ପୁରାଣରୁ ମଧ୍ୟ ଆମେ ଅବଗତ ହେଲୁ ଯେ ସେ ମରୁସ୍ଥଳ ନିବାସୀ ହେବେ। ଏହାଛଡ଼ା ଓଟ ଆରୋହଣ କରିବା ଭାରତୀୟ ବ୍ରାହ୍ମଣ ମାନଙ୍କ ପାଇଁ ହିନ୍ଦୁ ଶାସ୍ତ୍ର ଅନୁସାରେ ମଧ୍ୟ ନିଷିଦ୍ଧ ଅଛି। (ମନୁ ସଂହିତା ୧୧:୨୦୨)

ବିଶ୍ୱ ମାନବ ସମାଜର ପଥ ପ୍ରଦର୍ଶନ ପାଇଁ ଈଶ୍ୱରଙ୍କ ଦ୍ୱାରା ନିଯୁକ୍ତ ମହାମାନ୍ୟ ମାର୍ଗଦର୍ଶକ ମାନଙ୍କର ସର୍ବଦା ଭାରତୀୟ ହେବା ଅନିବାର୍ଯ୍ୟ ନୁହେଁ। ସେମାନେ

---

* 'Narashangsa and the Antim Rishi' by Dr. Ved Prakash Upaddhyay, Sanskrit Research Scholar, Prayag University.

ପୃଥିବୀର ଯେକୌଣସି ସ୍ଥାନର ହୋଇପାରନ୍ତି । ଆମ ଈଶ୍ୱର କେବଳ ଭାରତ ସୃଷ୍ଟି କରିନାହାନ୍ତି କିମ୍ବା କେବଳ ଭାରତୀୟ ମାନଙ୍କର କଲ୍ୟାଣ ଚାହୁଁ ନାହାନ୍ତି ଯେ ତାଙ୍କ ପ୍ରେରିତ ସମସ୍ତ ରସୁଲ ବା ଧର୍ମପ୍ରବର୍ତ୍ତକ ଭାରତରେ ହିଁ ଜନ୍ମ ହେବେ ଏବଂ ତାଙ୍କର ସମସ୍ତ ଦିବ୍ୟଗ୍ରନ୍ଥ ଭାରତରେ ହିଁ ଅବତୀର୍ଣ୍ଣ ହେବ । ମହାମାନ୍ୟ ମାର୍ଗଦର୍ଶକ ବା ଅବତାର ମାନେ ପୃଥିବୀର ବିଭିନ୍ନ ସ୍ଥାନରେ ଜନ୍ମଲାଭ କରିଛନ୍ତି । ସେମାନେ ଯେଉଁ ସମାଜରେ ଜନ୍ମ ଗ୍ରହଣ କରନ୍ତି, ତା'ରି ଭାଷା କୁହନ୍ତି, ସେଇ ସମାଜର ପୋଷାକ ପରିଧାନ କରନ୍ତି ଏବଂ ତତ୍‌କାଳୀନ ଯାନ ବାହନ ଆଦିର ବ୍ୟବହାର ମଧ୍ୟ କରିଥାଆନ୍ତି । ତେଣୁ, ମହାମାନ୍ୟ ମହମ୍ମଦଙ୍କର ଆରବରେ ଜନ୍ମଗ୍ରହଣ କରିବା କୌଣସି ଆଶ୍ଚର୍ଯ୍ୟ କଥା ନୁହେଁ ।

ଉପରୋକ୍ତ ଶ୍ଳୋକ ସୂଚନା ଦେଉଛି ଯେ ସେ ଋଷି ମରୁସ୍ଥଳରେ ପ୍ରକଟ ହେବେ ଯେଉଁଠାରେ ଓଟ ମାନଙ୍କର ବହୁଳ ବ୍ୟବହାର ଥିବ । ମହାମାନ୍ୟ ମହମ୍ମଦ ହିଁ ସେ ଋଷି ଯିଏ ଓଟ ଆରୋହଣ କରୁଥିଲେ । ଏଥିରେ ସଂଦେହର ଅବକାଶ ନାହିଁ ।



ଅନ୍ୟ ଭବିଷ୍ୟବାଣୀ ଗୁଡ଼ିକ ଏହିପରି :-

୧. ନରାଶଂସ ଲୋକମାନଙ୍କୁ ପାପରୁ ଉଦ୍ଧାର କରିବେ

(Rig Veda 1:106:4)

୨. ସେ ମିଷ୍ଟାଳାପୀ ହେବେ ଏବଂ ତାଙ୍କୁ ଦିବ୍ୟଜ୍ଞାନ ପ୍ରଦାନ କରାଯିବ ।

(Rig Veda 1:3:2)

ଏହା ବ୍ୟତୀତ ଅଥର୍ବ ବେଦରେ ବିଂଶ କାଣ୍ଡର ୧୨୭ ତମ ସୁକ୍ତର ମନ୍ତ୍ର ସଂଖ୍ୟା ୧ ରୁ ୧୩ ରେ ନରାଶଂସଙ୍କ ବିଷୟରେ ଆହୁରି ଅନେକ ଭବିଷ୍ୟବାଣୀ ରହିଛି ।

# କଲ୍କୀ ଅବତାର ରୂପେ ଭବିଷ୍ୟବାଣୀ

ଡ଼ଃ ବେଦ ପ୍ରକାଶ ଉପାଧ୍ୟାୟ 'ଅବତାର' ଶବ୍ଦର ଅର୍ଥ ବ୍ୟାଖ୍ୟା କରି ଲେଖିଛନ୍ତି :-

> ''ମୁଁ ସ୍ପଷ୍ଟ କରିଦେବାକୁ ଚାହେଁ ଯେ ସଂସ୍କୃତ ଶବ୍ଦ 'ଅବତାର' ଇଂରାଜୀରେ 'Prophet' ଏବଂ ଆରବୀ ଭାଷାରେ 'ନବୀ'ର ଅନୁରୂପ (ଦେଖନ୍ତୁ Sunderlalji's Hindu - Muslim Unity P. 29-30) । ପ୍ରାଚୀନ କାଳରେ ପ୍ରତ୍ୟେକ ଦେଶ ପାଇଁ ଜଣେ ଅବତାର ଅର୍ଥାତ୍ ମାର୍ଗଦର୍ଶକ ଆସୁଥିଲେ କାରଣ କୌଣସି ଜଣେ ଅବତାରଙ୍କ ପକ୍ଷରେ ସମଗ୍ର ବିଶ୍ୱର କଲ୍ୟାଣ ପାଇଁ କାର୍ଯ୍ୟ କରିବା ସଂଭବ ନ ଥିଲା । କିନ୍ତୁ ଅନ୍ତିମ ଅବତାରଙ୍କ କଥା ଅଲଗା । ସେ ସମଗ୍ର ମାନବ ସମାଜର କଲ୍ୟାଣ ପାଇଁ ପ୍ରେରିତ ହୋଇଛନ୍ତି । ତାଙ୍କ ଧର୍ମ ମାର୍ଗ ପ୍ରତ୍ୟେକ ମନୁଷ୍ୟ ପାଇଁ ଉଦ୍ଦିଷ୍ଟ ।''*

କଲ୍କୀ ଅବତାରଙ୍କ ଆଗମନୀ ବିଷୟରେ ପୁରାଣରେ ଭବିଷ୍ୟବାଣୀ ରହିଛି ଯେ :-

୧. ସେ ଅଶ୍ୱାରୋହଣ କରିବେ ଏବଂ ତରବାରୀ ଧାରଣ କରି ଦୁଷ୍ଟମାନଙ୍କୁ ଦମନ କରିବେ ।

(Bhagabat Purana 12:2:19)

ଇତିହାସରୁ ଆମେ ଜାଣୁ ଯେ ମହାମାନ୍ୟ ମହମ୍ମଦ ଅଶ୍ୱାରୋହଣ କରୁଥିଲେ ଏବଂ ତରବାରୀ ଧରି ଯୁଦ୍ଧ ମଧ୍ୟ କରୁଥିଲେ । ବର୍ତ୍ତମାନର ଯୁଗ ବିଜ୍ଞାନର ଯୁଗ ଏବଂ ଅତ୍ୟାଧୁନିକ ଆଣବିକ ଅସ୍ତ୍ର ଶସ୍ତ୍ରର ଯୁଗ । ଘୋଡ଼ା ଏବଂ ତରବାରୀ ଯୁଗ ସରିଯାଇଛି । ଏପରି ସ୍ଥଳେ ବର୍ତ୍ତମାନ ଅଶ୍ୱାରୋହଣ କରୁଥିବା ଏବଂ ତରବାରୀ ଧରି ଯୁଦ୍ଧ କରୁଥିବା ଜଣେ ଅବତାରଙ୍କର ପ୍ରତୀକ୍ଷା କେତେ ଦୂର ଯୁକ୍ତିଯୁକ୍ତ ? ପ୍ରକୃତ କଥାଟି ହେଉଛି ଯେ ଅନ୍ତିମ ଅବତାର ମହାମାନ୍ୟ ମହମ୍ମଦଙ୍କର ଆବିର୍ଭାବ ହୋଇସାରିଛି ।

---

* 'Kalki Avatar and Muhammad'

ଭାଗବତ ପୁରାଣ କହୁଛି ଯେ :-

୨. ଅନ୍ତିମ ଅବତାର ଜଗଦ୍‌ଗୁରୁ ବା ଜଗତର ରକ୍ଷକ ହେବେ ।

(Bhagabat Purana 12:2:19)

ମହାମାନ୍ୟ ମୁହମ୍ମଦଙ୍କୁ ସଂବୋଧନ କରି ପବିତ୍ର କୁରଆନରେ ପରମେଶ୍ୱର ଅଲ୍ଲାହ୍ କହିଛନ୍ତି :-

"(ହେ ମୁହମ୍ମଦ) ଆପଣ କହି ଦିଅନ୍ତୁ : ହେ ମାନବ ଗଣ ! ମୁଁ ତୁମ ସମସ୍ତଙ୍କ ପ୍ରତି ସେହି ଅଲ୍ଲାହଙ୍କର ରସୁଲ ହୋଇ ଆସିଛି ଯିଏ ପୃଥିବୀ ଓ ଆକାଶ ମଣ୍ଡଳ ସାମ୍ରାଜ୍ୟର ସ୍ୱାମୀ ।"

(Al Qur'an 7:158)

୩. ସ୍ୱର୍ଗଦୂତ ମାନଙ୍କ ଦ୍ୱାରା ଅନ୍ତିମ ଅବତାରଙ୍କର ସହାୟତା କରାଯିବ ।

(Kalki Purana 2:7)

କୁରଆନ୍‌ରେ ଉଲ୍ଲେଖ ଅଛି ଯେ ଯୁଦ୍ଧ କ୍ଷେତ୍ରରେ (Battle of Badr) ସ୍ୱର୍ଗଦୂତମାନଙ୍କ ଦ୍ୱାରା ମହାମାନ୍ୟ ମହମ୍ମଦଙ୍କର ସହାୟତା କରାଯାଇଥିଲା । (Al Qur'an 8:9)

୪. କଳ୍‌କୀ ଅବତାରଙ୍କ ଶରୀରରୁ ସୁଗନ୍ଧ ବାହାରିବ ଯାହା ନିକଟରେ ଥିବା ଲୋକମାନଙ୍କ ମନକୁ ପ୍ରଫୁଲ୍ଲିତ କରିଦେବ ।

(Bhagabat Purana 12:2:21)

ଆମେ ଇତିହାସରୁ ଜାଣୁ ଯେ ମହାମାନ୍ୟ ମୁହମ୍ମଦଙ୍କ ଝାଳରୁ ସୁଗନ୍ଧ ଆସୁଥିଲା । (Shamael Tirmidhi and "Life of Mohmet by Sir William Muir P-342")

୫. ଅନ୍ତିମ ଋଷିଙ୍କ ଆବିର୍ଭାବ ହେବା ସ୍ଥାନ ବିଷୟରେ କଳ୍‌କୀ ପୁରାଣରେ ଭବିଷ୍ୟବାଣୀ ରହିଛି ଯେ ସେ ଶମ୍ଭଲ ଗ୍ରାମରେ ବିଷ୍ଣୁଯଶଙ୍କ ଘରେ ତାଙ୍କ ପତ୍ନୀ ସୁମତୀଙ୍କ ଗର୍ଭରୁ ଜନ୍ମ ନେବେ ।

(Kalki Purana 2:4)

୬. ସେ 'ଶମ୍ଭଲ' ଗ୍ରାମର 'ମୁଖ୍ୟ ବ୍ରାହ୍ମଣଙ୍କ' ଘରେ ଜନ୍ମ ଗ୍ରହଣ କରିବେ ଏବଂ ତାଙ୍କ ପିତାଙ୍କ ନାମ 'ବିଷ୍ଣୁଯଶ' ହେବ :-

'सम्भल ग्राम मुख्यस्य ब्राह्मणस्य महात्मनः।
भवने विश्ष्णुयशसः कल्किः प्रादुर्भाविष्यति।।'

(Bhagabat Purana 12:2:18)

ତାଙ୍କ ମାତାଙ୍କ ନାମ 'ସୁମତି' ହେବ :-

शम्भले विष्णु यशसो गृहे प्रादुर्भवाम्यहम्।
सुमत्यांमार्तार विभो! पत्नीयां त्वन्निर्देशतः।।

(Kalki Purana 2:4)

ପଣ୍ଡିତ ବେଦ ପ୍ରକାଶ ଉପାଧ୍ୟାୟ ଲେଖିଛନ୍ତି ଯେ 'ଶମ୍ଭଲ' ଅର୍ଥ 'ଶାନ୍ତିର ଘର' ଏବଂ ମକ୍କା ସହରକୁ ଆରବୀ ଭାଷାରେ ଦାରୁଲ ଅମନ୍ (Darul-Aman) କୁହାଯାଏ ଯାହାର ଅର୍ଥ 'ଶାନ୍ତିର ଘର' ବା Abode of Security*



ଉପରୋକ୍ତ ଶ୍ଳୋକରେ କଳ୍କୀ ଅବତାରଙ୍କ ମାତାଙ୍କ ନାମ 'ସୁମତି' ହେବ ବୋଲି ଉଲ୍ଲେଖ ଯାହାର ଅର୍ଥ 'ଶାନ୍ତଶିଷ୍ଟ ସ୍ୱଭାବର ମହିଳା'। ଇତିହାସରୁ ଆମେ ଜାଣୁ ଯେ ମହାମାନ୍ୟ ମହମ୍ମଦଙ୍କ ମାତାଙ୍କ ନାମ 'ଆମିନା' ଥିଲା। 'ସୁମତି'ର ଆରବୀ ଅନୁବାଦ ମଧ 'ଆମିନା'।

କଳ୍କୀ ଅବତାରରେ ପିତାଙ୍କ ନାମ 'ବିଷ୍ଣୁଯଶ'। ପଣ୍ଡିତ ବେଦ ପ୍ରକାଶ ଉପାଧ୍ୟାୟ ଲେଖିଛନ୍ତି ଯେ ବିଷ୍ଣୁଯଶର ଅର୍ଥ 'ବିଷ୍ଣୁ ବା ଈଶ୍ୱରଙ୍କର ପୂଜାରୀ'। ମହାମାନ୍ୟ ମହମ୍ମଦଙ୍କ ପିତାଙ୍କ ନାମ ଥିଲା 'ଅବ୍ଦୁଲ୍ଲାହ' ଯାହାର ଅର୍ଥ ମଧ 'ଅଲ୍ଲାହଙ୍କର ପୂଜାରୀ'।

ସେ ଶମ୍ଭଲର ମୁଖ୍ୟ ବ୍ରାହ୍ମଣ ଅର୍ଥାତ୍ ଅବୁ ମୁତଲିବ୍‌ଙ୍କ ଘରେ ଜନ୍ମଗ୍ରହଣ କରିଥିଲେ ଯିଏ ମହାମାନ୍ୟ ମୁହମ୍ମଦଙ୍କର ଜେଜେବାପା ତଥା ମକ୍କାର ସର୍ଦ୍ଦାର ଥିଲେ।

---

* 'Kalki Avatar and Muhammad' (Ch.-7)

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ କଳ୍କୀ ଅବତାର ମହାମାନ୍ୟ ମହମ୍ମଦଙ୍କ ବ୍ୟତୀତ ଅନ୍ୟ କେହି ନୁହେଁ ।

୮. କଳକୀ ଅବତାର ଅନ୍ତିମ ଅବତାର ହେବେ ।

(Bhagabata Purana 1:3:24)

ପଣ୍ଡିତ ବେଦ ପ୍ରକାଶ ଉପାଧ୍ୟାୟ 'କଳ୍କୀ ଅବତାର ଏବଂ ମୁହମ୍ମଦ' ପୁସ୍ତକରେ ଲେଖିଛନ୍ତି :-

''କଳ୍କୀ ଅବତାରଙ୍କୁ ଭାଗବତ ପୁରାଣରେ 'ଅନ୍ତିମ ଅବତାର' ବୋଲି ବର୍ଣ୍ଣନା କରାଯାଇଛି । କୌତୁହଳ କଥା ଯେ କୁରଆନ୍ ମଧ୍ୟ ମହାମାନ୍ୟ ମହମ୍ମଦଙ୍କୁ 'ଅନ୍ତିମ ରସୁଲ' ବୋଲି ଘୋଷଣା କରୁଛି ।'' (Qur'an 33:40)

୯. କଳକୀ ଅବତାର ମାଧବ ମାସ ଶୁକ୍ଳପକ୍ଷ ଦ୍ୱାଦଶୀ ଦିନ ଜନ୍ମଗ୍ରହଣ କରିବେ । (Kalki Purana 2:25/2:15) ଏ ସଂବନ୍ଧରେ ପଣ୍ଡିତ ଉପାଧ୍ୟାୟ ଲେଖିଛନ୍ତି ଯେ ଏହା ଐତିହାସିକ ରୂପେ ପ୍ରମାଣିତ ହୋଇ ସାରିଛି ଯେ ମହାମାନ୍ୟ ମହମ୍ମଦ ମାଧବ ମାସ ଶୁକ୍ଳପକ୍ଷ ଦ୍ୱାଦଶୀ ଦିନ (12th day of bright half of the month of Rabbi-ul Awal) ଜନ୍ମଗ୍ରହଣ କରିଛନ୍ତି ।

ଉପରୋକ୍ତ ଆଲୋଚ଼ନାରୁ ମହାମାନ୍ୟ ମହମ୍ମଦ ଯେ କଳ୍କୀ ଅବତାର ତଥା ଅନ୍ତିମ ଋଷି, ଏହା ବୁଝିବାରେ କୌଣସି ଅସୁବିଧା ନାହିଁ ।

(ଟିପ୍ପଣୀ : ବିଶଦ ବିବରଣୀ ପାଇଁ Islamic Research Foundation, 56/58 Tandel Street (North) Dongri, Mumbai - 400009, Website - www.irf.net ସହିତ ଯୋଗାଯୋଗ କରାଯାଇପାରେ ।)

## ବାଇବେଲରେ ଭବିଷ୍ୟବାଣୀ

ପବିତ୍ର କୁର୍‌ଆନରେ ଉଲ୍ଲେଖ ଅଛି ଯେ ଧର୍ମଦୂତ ମହମ୍ମଦଙ୍କ ଆଗମନୀର ଖବର ମହାମାନ୍ୟ ଧର୍ମଦୂତ ମୁସା ଏବଂ ମହାମାନ୍ୟ ଧର୍ମଦୂତ ଇସା ଅର୍ଥାତ୍ ଯୀଶୁଖ୍ରୀଷ୍ଟଙ୍କ ମାଧ୍ୟମରେ ପ୍ରେରିତ ଦିବ୍ୟଗ୍ରନ୍ଥରେ ଦିଆଯାଇଥିଲା । (କୁର୍‌ଆନ୍ ୭:୧୫୭)। ଅବଶ୍ୟ ବାଇବେଲରେ ଅନେକ ସଂଶୋଧନ ଏବଂ ପରିବର୍ତ୍ତନ ହୋଇସାରିଛି, ତଥାପି ଏବେ ମଧ୍ୟ ସେଥିରେ ମହାମାନ୍ୟ ମହମ୍ମଦଙ୍କ ବିଷୟରେ ଭବିଷ୍ୟବାଣୀ ରହିଛି ।

**Old Testament :–** ବାଇବେଲରେ ଲେଖା ଅଛି ଯେ ଈଶ୍ୱର ମହାମାନ୍ୟ ଧର୍ମଦୂତ ମୁସାଙ୍କୁ କହିଲେ :-

> ''ଆମ୍ଭେ ସେମାନଙ୍କ ନିମନ୍ତେ ସେମାନଙ୍କ ଭ୍ରାତୃଗଣ ମଧ୍ୟରୁ ତୁମ୍ଭ ସଦୃଶ ଜଣେ ଭବିଷ୍ୟଦ୍‌ବକ୍ତା ଉତ୍ପନ୍ନ କରିବା ଓ ଆମ୍ଭେ ତାହାଙ୍କ ମୁଖରେ ଆପଣା ବାକ୍ୟ ଦେବା ଓ ଆମ୍ଭ ତାହାଙ୍କୁ ଯେ ଯେ ଆଜ୍ଞା ଦେବା, ତାହା ସେ ସେମାନଙ୍କୁ କହିବେ ।''

( Deutoronomy 18:18 )

ଉପରୋକ୍ତ ଭବିଷ୍ୟବାଣୀରୁ ସ୍ପଷ୍ଟ ଜଣା ପଡୁଛି ଯେ ଏହା ଧର୍ମଦୂତ ମହମ୍ମଦଙ୍କ ବିଷୟରେ ହିଁ କରାଯାଇଛି । ଏହାର ନିମ୍ନଲିଖିତ କାରଣ ରହିଛି :-

ଈଶ୍ୱରଦୂତ ମହାମାନ୍ୟ ଇବ୍ରାହିମଙ୍କର ଦୁଇପୁତ୍ର ଥିଲେ : ଇସମାଇଲ୍ ଏବଂ ଇସ୍‌ହାକ୍ । ମହାମାନ୍ୟ ଇସମାଇଲ୍‌ଙ୍କ ବଂଶ 'ଇସ୍‌ମାଇଲି' ରୂପେ ପ୍ରସିଦ୍ଧ । ଇସହାକ୍‌ଙ୍କ ପୁତ୍ରଙ୍କ ଉପାଧି ଇସ୍ରାଇଲ୍ ଥିବା ହେତୁ ତାଙ୍କ ସନ୍ତାନକୁ 'ଇସ୍ରାଇଲି' କୁହାଯାଏ । ଏପରି ଭାବରେ ମହାମାନ୍ୟ ଇବ୍ରାହିମଙ୍କ ଦୁଇପୁତ୍ରଙ୍କ ଠାରୁ ଦୁଇଟି ବଂଶ 'ଇସମାଇଲି' ଏବଂ 'ଇସ୍ରାଇଲି' ଚାଲିଲା । ମହାମାନ୍ୟ ଧର୍ମଦୂତ ଇସା (Christ) ଇସ୍ରାଇଲି ବଂଶର ଥିଲେ କିନ୍ତୁ ମହାମାନ୍ୟ ମହମ୍ମଦ ଇସ୍ରାଇଲିଙ୍କ ଭାଇ ଅର୍ଥାତ୍ ଇସମାଇଲି ବଂଶର ଥିଲେ । ବାଇବେଲରେ 'ଭାଇର ଶବ୍ଦ ଏହି ଦୁଇଟି ବଂଶର ପରସ୍ପର ଭାଇ ହେବା ଅର୍ଥରେ କେତେକ ସ୍ଥାନରେ ବ୍ୟବହୃତ ହୋଇଛି । ତେଣୁ ମୁହମ୍ମଦ ଇସ୍ରାଇଲିଙ୍କ ଭାଇଗଣଙ୍କ ମଧ୍ୟରୁ ହିଁ ଆସିଛନ୍ତି ।



ଉପରୋକ୍ତ ଭବିଷ୍ୟବାଣୀ ଏହା କହୁଛି ଯେ ଆଗନ୍ତୁକ ଧର୍ମପ୍ରବର୍ତ୍ତକ ମହାମାନ୍ୟ ମୁସାଙ୍କ ସଦୃଶ ହେବେ । ଧର୍ମଦୂତ ମୁସାଙ୍କ ସହ ମହାମାନ୍ୟ ମୁହମ୍ମଦଙ୍କର ଅନେକ ସାମଞ୍ଜସ୍ୟ ରହିଛି ଯଥା :-

୧. ମହାମାନ୍ୟ ମୁସାଙ୍କ ପରି ମହାମାନ୍ୟ ମୁହମ୍ମଦ ମଧ୍ୟ ସାଧାରଣ ଭାବରେ ଜନ୍ମଲାଭ କରିଥିଲେ । ଦୁହିଁଙ୍କର ପିତାମାତା ଥିଲେ ।
୨. ମହାମାନ୍ୟ ମୁସା ଏବଂ ମହମ୍ମଦ, ଦୁହେଁ ବିବାହ କରିଥିଲେ ।
୩. ଧର୍ମଦୂତ ମୁସାଙ୍କ ପରି ମହମ୍ମଦ, ମଧ୍ୟ ଧର୍ମଯୁଦ୍ଧ କରିଥିଲେ ।
୪. ମହାମାନ୍ୟ ମୁସାଙ୍କ କିମ୍ବା ମୁହମ୍ମଦଙ୍କ ଅନୁଗାମୀ ତାଙ୍କୁ ପ୍ରତାରିତ କରି ନାହାନ୍ତି ।
୫. ଦୁହିଁଙ୍କୁ ତାଙ୍କ ସମାଜ କିଛି କାଳ ପରେ ସ୍ୱୀକାର କରିନେଇଥିଲା ।

୬. ମହାମାନ୍ୟ ମୁସାଙ୍କ ପରି ମହମ୍ମଦ ମଧ୍ୟ ଦେଶତ୍ୟାଗ (ହିଜରତ୍) କରିଥିଲେ ।

୭. ଯେପରି ମହାମାନ୍ୟ ମୁସାଙ୍କ ମାଧ୍ୟମରେ ଅବତରିତ ଦିବ୍ୟ ଗ୍ରନ୍ଥ ତାଙ୍କ ଜୀବନକାଳ ମଧ୍ୟରେ ଲେଖି ନିଆଯାଇଥିଲା, ସେହିପରି ମହାମାନ୍ୟ ମହମ୍ମଦଙ୍କ ମାଧ୍ୟମରେ ଅବତରିତ କୁରଆନ୍ ମଧ୍ୟ ତାଙ୍କ ଜୀବନକାଳ ମଧ୍ୟରେ ହିଁ ଲିପିବଦ୍ଧ ହୋଇ ସାରିଥିଲା ।

୮. ମହାମାନ୍ୟ ମୁସାଙ୍କ ଭଳି ମହାମାନ୍ୟ ମହମ୍ମଦ ମଧ୍ୟ ସାଧାରଣ ଭାବରେ ସ୍ୱର୍ଗବାସ କରିଛନ୍ତି ।

ଏଥିରୁ ପ୍ରମାଣିତ ହେଉଛି ଯେ ମହାମାନ୍ୟ ମୁହମ୍ମଦ ଧର୍ମଦୂତ ମୁସାଙ୍କ ସଦୃଶ ଥିଲେ ।

ଉପରୋକ୍ତ ଭବିଷ୍ୟବାଣୀ ଏହା ମଧ୍ୟ କହୁଛି ଯେ ଈଶ୍ୱର ସେହି ଧର୍ମପ୍ରବର୍ତ୍ତକଙ୍କ ମୁଖରେ ଆପଣା ବାକ୍ୟ ରଖିବେ, ଅର୍ଥାତ୍ ତାଙ୍କ ପ୍ରତି ଦିବ୍ୟବାଣୀ କରାଯିବ । ସଂପୂର୍ଣ୍ଣ କୁରଆନ୍ ମହାମାନ୍ୟ ମହମ୍ମଦଙ୍କ ମୁଖରୁ କେବଳ ନିସୃତ ହୋଇଛି । ଈଶ୍ୱରଙ୍କ ଦ୍ୱାରା ପ୍ରକଟିତ ଦିବ୍ୟବାଣୀକୁ ସେ ବିନା କୌଣସି ପରିବର୍ତ୍ତନ କରି ମାନବ ସମାଜକୁ ପହଞ୍ଚାଇ ଦେଲେ ।



''ଆମ୍ଭେ ତାହାଙ୍କୁ ଯେ ଯେ ଆଜ୍ଞା ଦେବା, ତାହା ସେ ସେମାନଙ୍କୁ କହିବେ'' - ଏ ବିଷୟରେ ପବିତ୍ର କୁରଆନ୍ କହୁଛି ଯେ ମହାମାନ୍ୟ ମହମ୍ମଦ ସ୍ୱଇଚ୍ଛାରୁ କିଛି କହୁନଥିଲେ ବରଂ ତାଙ୍କୁ ଦିବ୍ୟବାଣୀ ହେଉଥିଲା । (କୁରଆନ୍ ୫୩-୩)

**New Testament :–**

ବାଇବେଲର ନୂତନ ନିୟମରେ ନିମ୍ନ ଭବିଷ୍ୟବାଣୀ ରହିଛି :-

''ଆଉ, ମୁଁ ପିତାଙ୍କୁ ଅନୁରୋଧ କରିବି, ପୁଣି ତୁମ୍ଭମାନଙ୍କ ସାଙ୍ଗରେ ଚିରକାଳ ରହିବା ନିମନ୍ତେ ସେ ତୁମ୍ଭମାନଙ୍କୁ ଆଉ ଜଣେ ସାହାଯ୍ୟକାରୀଙ୍କି ଅର୍ଥାତ୍ ସେହି ସତ୍ୟମୟ ଆତ୍ମାଙ୍କୁ ଦେବେ ।''

( John 14:16 )

''କିନ୍ତୁ ସେହି ସାହାଯ୍ୟକାରୀ ଅର୍ଥାତ୍ ଯେଉଁ ପବିତ୍ର ଆତ୍ମାଙ୍କୁ ପିତା ମୋ ନାମରେ ପ୍ରେରଣ କରିବେ, ସେ ତୁମ୍ଭମାନଙ୍କୁ ସମସ୍ତ ବିଷୟ ଶିକ୍ଷା ଦେବେ, ଆଉ ମୁଁ ତୁମ୍ଭମାନଙ୍କୁ ଯାହା ଯାହା କହିଅଛି, ସେହି ସବୁ ତୁମ୍ଭମାନଙ୍କୁ ସ୍ମରଣ କରାଇବେ ।''

( John 14:26 )

''ମୁଁ ତୁମ୍ଭମାନଙ୍କ ସହିତ ଆଉ ଅଧିକ କଥାବାର୍ତ୍ତା କରିବି ନାହିଁ, କାରଣ ଜଗତର ଅଧିପତି ଆସୁଅଛି, ଆଉ ମୋ ଠାରେ ତାହାର କିଛି ହିଁ ନାହିଁ ।''

( John 14:30 )

''ପିତାଙ୍କ ନିକଟରୁ ମୁଁ ତୁମ୍ଭମାନଙ୍କ ନିକଟକୁ ଯେଉଁ ସାହାଯ୍ୟକାରୀଙ୍କୁ ପ୍ରେରଣ କରିବି, ପିତାଙ୍କ ଠାରୁ ବହିର୍ଗତ ସେହି ସତ୍ୟମୟ ଆତ୍ମା ଆସିଲେ ମୋ ବିଷୟରେ ସାକ୍ଷ୍ୟ ଦେବେ ।''

( John 15:26 )



ଉପରୋକ୍ତ ଭବିଷ୍ୟବାଣୀ ଗୁଡ଼ିକ ମହାମାନ୍ୟ ଯୀଶୁଙ୍କ ପରେ ଆଉ ଜଣେ ମାର୍ଗଦର୍ଶକଙ୍କ ବିଷୟର ନିମ୍ନଲିଖିତ ସୂଚନା ଦେଉଛି :-

୧. ଭବିଷ୍ୟତରେ ଆସୁଥିବା ମାର୍ଗଦର୍ଶକ ଚିରକାଳ ରହିବେ ଅର୍ଥାତ୍ ସେ ଈଶ୍ୱରଙ୍କର ଅନ୍ତିମ ସଂଦେଶ ବାହକ ହେବେ ଏବଂ ତାଙ୍କ ମାଧ୍ୟମରେ ପ୍ରେରିତ ବିଧାନ ପ୍ରଳୟ ପର୍ଯ୍ୟନ୍ତ ବଳବତ୍ତର ରହିବ । ପବିତ୍ର କୁରଆନ୍ ମଧ୍ୟ ଏହାହିଁ ଘୋଷଣା କରିଛି ଯେ ମହାମାନ୍ୟ ମହମ୍ମଦ ହିଁ ଅନ୍ତିମ ମାର୍ଗଦର୍ଶକ । ( Qur'an 33:40 )

୨. ସେ କୌଣସି ନୂତନ ଧର୍ମ ଆଣିବେ ନାହିଁ ବରଂ ମହାମାନ୍ୟ ଯୀଶୁଙ୍କର ଶିକ୍ଷାର ସମର୍ଥନ କରିବେ ଏବଂ ଏହାକୁ ପୂର୍ଣ୍ଣାଙ୍ଗ କରିବେ । ସୁତରାଂ କୁରଆନ୍ ଅନେକ ସ୍ଥାନରେ ମହାମାନ୍ୟ ଯୀଶୁ ଦେଉଥିବା ଶିକ୍ଷା ଗୁଡ଼ିକୁ ବର୍ଣ୍ଣନା କରିଛି ଏବଂ ମହାମାନ୍ୟ ମୁହମ୍ମଦ ଯୀଶୁଙ୍କ ଶିକ୍ଷା ବିଷୟରେ ଲୋକମାନଙ୍କୁ ସ୍ମରଣ କରାଇଛନ୍ତି ।

୩. ଭବିଷ୍ୟବାଣୀରେ ମହାମାନ୍ୟ ଯୀଶୁ କହିଛନ୍ତି ଯେ ଯେଉଁ ଜଗତର ଅଧିପତି ଆସିବେ ମୋ'ଠାରେ ତାଙ୍କର କିଛି ହିଁ ନାହିଁ । ଅର୍ଥାତ୍ ଆସୁଥିବା ଧର୍ମପ୍ରବର୍ତ୍ତକଙ୍କ ଲକ୍ଷ୍ୟ ବା Mission ମହାମାନ୍ୟ ଯୀଶୁଙ୍କ ଠାରୁ ବୃହତ୍ତର ହେବ ଏବଂ ମହାମାନ୍ୟ ମୁହମ୍ମଦଙ୍କ ପାଇଁ ହିଁ ଏହା ପ୍ରଯୁଜ୍ୟ ।

୪. ସେ ଯୀଶୁଙ୍କ ବିଷୟର ସାକ୍ଷ୍ୟ ଦେବେ ଅର୍ଥାତ୍ ଲୋକମାନଙ୍କୁ ଏହି ସତ୍ୟତା ବିଷୟରେ ଅବଗତ କରାଇବେ ଯେ ମହାମାନ୍ୟ ଯୀଶୁ ଈଶ୍ୱରଙ୍କର ପ୍ରେରିତ ମାର୍ଗଦର୍ଶକ ଥିଲେ ଏବଂ ସେ କୁମାରୀ ମାତା ମରିୟମଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ । ସୁତରାଂ ମହାମାନ୍ୟ ମୁହମ୍ମଦ ଏବଂ ତାଙ୍କ ସମସ୍ତ ଅନୁଗାମୀ ମହାମାନ୍ୟ ଯୀଶୁଙ୍କୁ ଈଶ୍ୱରଙ୍କ ପ୍ରେରିତ ପୈଗମ୍ବର ବା ଧର୍ମଦୂତ ବୋଲି ସ୍ୱୀକାର କରନ୍ତି ଏବଂ ତାଙ୍କ ପବିତ୍ରତାର ସାକ୍ଷ୍ୟ ପ୍ରଦାନ କରନ୍ତି । ଅଲ୍ଲାହ୍‌ଙ୍କର ତାଙ୍କ ପ୍ରତି ଅଶେଷ କରୁଣାର ବର୍ଷା ହେଉ ।

# ଧର୍ମ ବିଷୟରେ ବାଧ ବାଧକତା ନାହିଁ

ପ୍ରିୟ ବନ୍ଧୁଗଣ, ଧର୍ମ ସଂବନ୍ଧରେ କୌଣସି ବାଧ-ବାଧକତା ନାହିଁ । ପୂଜା-ଉପାସନା ଧର୍ମର ମୁଖ୍ୟ ତଥା ଅବିଚ୍ଛେଦ୍ୟ ଅଙ୍ଗ ଏବଂ ଏହା ଆନ୍ତରିକ ଶ୍ରଦ୍ଧା ଓ ଭକ୍ତି ସହ ସଂପର୍କିତ । ଇଚ୍ଛା ବିରୁଦ୍ଧରେ ବା ବଳ ପ୍ରୟୋଗ ଦ୍ୱାରା କାହାରିକୁ ପରମେଶ୍ୱରଙ୍କ ବିଶ୍ୱସ୍ତ କରାଇବା ସଂଭବ ନୁହେଁ । ଏହି କାରଣରୁ ପବିତ୍ର କୁରଆନ୍ ଘୋଷଣା କରିଛି -

لَآ إِكْرَاهَ فِى ٱلدِّينِ ۖ قَد تَّبَيَّنَ ٱلرُّشْدُ مِنَ ٱلْغَىِّ

( Al-Qur'an - 2 : 256)



**ଭାବାର୍ଥ :-** ''ଧର୍ମ ସଂକ୍ରାନ୍ତରେ କୌଣସି ବାଧ-ବାଧକତା ନାହିଁ, (କାରଣ) ସତ୍ ମାର୍ଗକୁ ଅସତ୍ ମାର୍ଗରୁ ପୃଥକ କରିଦିଆଯାଇଛି ।''

ଅର୍ଥାତ୍, କୌଣସି ନିର୍ଦ୍ଦିଷ୍ଟ ପଥରେ ଚାଲିବା ପାଇଁ ଈଶ୍ୱର ବାଧ କରୁ ନାହାନ୍ତି । ସେ ମନୁଷ୍ୟକୁ ବୁଦ୍ଧି ଓ ବିବେକ ପ୍ରଦାନ କରିଛନ୍ତି, ଭଲ-ମନ୍ଦ ବିଚାର କରିବାର ସାମର୍ଥ୍ୟ ମଧ୍ୟ ପ୍ରଦାନ କରିଛନ୍ତି । କିନ୍ତୁ କୌଣସି କର୍ମ କରିବା କିମ୍ୱା ନ କରିବାର ନିର୍ଣ୍ଣୟ ମନୁଷ୍ୟ ନିଜେ କରେ ଏବଂ ସେଇ ଅନୁସାରେ ତାକୁ କର୍ମଫଳ ମଧ୍ୟ ଭୋଗ କରିବାକୁ ପଡ଼େ । ଯଦି କେହି ସତ୍‌ପଥରେ ଚାଲିବାର ସିଦ୍ଧାନ୍ତ ନିଏ ତେବେ ଈଶ୍ୱର ତାକୁ ବିପଥଗାମୀ କରନ୍ତି ନାହିଁ କିମ୍ୱା ଯଦି ସେ ଅସତ ପଥ ବାଛେ ତେବେ ତାକୁ ବାଧ କରି ପୁଣ୍ୟବାନ କରାଯାଏ ନାହିଁ ।

ଉଦାହରଣ ସ୍ୱରୂପ - ଈଶ୍ୱର ହିଁ ସମସ୍ତଙ୍କୁ ଆହାର ଦିଅନ୍ତି, କିନ୍ତୁ ସେଇ

ବାଟରେ ଦିଅନ୍ତି ଯାହାକୁ ବ୍ୟକ୍ତି ନିଜେ ବାଛିଥାଏ । ଧରନ୍ତୁ ଚୋରି କିମ୍ବା ବ୍ୟବସାୟ ମଧ୍ୟରୁ ଯଦି ଜଣେ ବ୍ୟକ୍ତି ସାଧୁତାର ପନ୍ଥା ଅବଲମ୍ବନ କରି ବ୍ୟବସାୟ କରିବାର ନିର୍ଣ୍ଣୟ କରେ ତେବେ ଈଶ୍ୱର ତାକୁ ବଳପୂର୍ବକ ଚୋର କରନ୍ତି ନାହିଁ । କର୍ମ ପାଇଁ ବାଧ୍ୟ କରିଦେଲେ ମାନବ ସୃଷ୍ଟିର ଉଦ୍ଦେଶ୍ୟ ସାଧିତ ହୁଅନ୍ତା ନାହିଁ । ତେଣୁ, ମନୁଷ୍ୟକୁ କେବଳ ସତ୍ ଓ ଅସତ୍ ମଧ୍ୟରେ ଥିବା ପ୍ରଭେଦ ବିଷୟରେ ଅବଗତ କରାଇଦିଆଯାଏ ଏବଂ ମୃତ୍ୟୁ ପରେ ତାର ଉତ୍ତରଦାୟୀତ୍ୱ ସଂପର୍କରେ ସତର୍କ କରାଇ ଦିଆଯାଏ ।

## ମନୁଷ୍ୟ ନିଜ କର୍ମ ପାଇଁ ଉତ୍ତରଦାୟୀ

ଅନେକଙ୍କର ଧାରଣା ରହିଛି ଯେ ମନୁଷ୍ୟ ଈଶ୍ୱରଙ୍କ ହାତରେ କଣ୍ଢେଇ ମାତ୍ର । ସେମାନେ କୁହନ୍ତି -

ଦଇବ ଦଉଡ଼ି, ମଣିଷ ଗାଈ,
ଯେଣିକି ଟାଣିଲେ ତେଣିକି ଯାଇ ।



ଅର୍ଥାତ୍ ଈଶ୍ୱରଙ୍କ ଇଚ୍ଛା ବିରୁଦ୍ଧରେ ପତ୍ରଟିଏ ମଧ୍ୟ ହଲେ ନାହିଁ । ସେ ଯେମିତି ଇଚ୍ଛା କରନ୍ତି ମନୁଷ୍ୟ ସେହିପରି କରେ । ତେଣୁ ମନୁଷ୍ୟ ନିଜ କର୍ମ ପାଇଁ ଉତ୍ତରଦାୟୀ ନୁହେଁ । ଏମାନେ ଭାଗ୍ୟ ବା ଭଗବାନଙ୍କ ଉପରେ ସବୁ ଦୋଷ ଲଦି ଦେଇ ନିଜେ ସୁନା ପୁଅ ସାଜି ବସି ଯାଆନ୍ତି ଏବଂ ନିଜ ଇଚ୍ଛାକୁ ଈଶ୍ୱରଙ୍କ ଇଚ୍ଛା ମନେ କରି ଯାବତୀୟ ପ୍ରକାର ଅନ୍ୟାୟ ଓ ଅତ୍ୟାଚାର କରି ଚାଲନ୍ତି ।

ଅବଶ୍ୟ ଈଶ୍ୱର ଇଚ୍ଛା କଲେ ସୂର୍ଯ୍ୟ, ଚନ୍ଦ୍ର, ପଶୁପକ୍ଷୀ ଏବଂ ତରୁଲତା ଭଳି କୌଣସି ମନୁଷ୍ୟ ମଧ୍ୟ ତାଙ୍କର ଅବାଧ ହୋଇ ପାରନ୍ତା ନାହିଁ । କିନ୍ତୁ ଆଦେଶ ମାନିବା ପାଇଁ ବାଧ୍ୟ କରିଦେଲେ ପରୀକ୍ଷାର ଉଦ୍ଦେଶ୍ୟ ସାଧିତ ହୁଅନ୍ତା ନାହିଁ । ତା' ଈଶ୍ୱର ଭକ୍ତି ତଥା ଧର୍ମନିଷ୍ଠତାର ପରୀକ୍ଷା ସଂଭବ ହୁଅନ୍ତା ନାହିଁ ଏବଂ ସ୍ୱର୍ଗ ଓ ନର୍କର ସୃଷ୍ଟି ମଧ୍ୟ ନିରର୍ଥକ ହୋଇ ଯାଆନ୍ତା । ତେଣୁ ମନୁଷ୍ୟକୁ ତାର ଆୟତ୍ତାଧୀନ କର୍ମଗୁଡ଼ିକ

ବିଷୟରେ ସ୍ୱାଧିନତା ପ୍ରଦାନ କରାଯାଇଛି । ଏହି କାରଣରୁ ମନୁଷ୍ୟ ନିୟମ ଲଂଘନ କରିଯାଏ ।

ଏ ବିଶାଳ ବ୍ରହ୍ମାଣ୍ଡର ରଚୟିତା ଜଣେ ଅବୋଧ ଶିଶୁ ନୁହନ୍ତି ଯେ ନିରର୍ଥକ ଏହାକୁ ସୃଷ୍ଟି ଦେଇଛନ୍ତି । ହଜାର ହଜାର ବର୍ଷ ଧରି ପ୍ରାଣୀମାନଙ୍କର ପ୍ରତିପାଳନ ଏବଂ ଜନ୍ମ ଓ ମୃତ୍ୟୁ ଅକାରଣରେ ଚାଲିନାହିଁ । ଏହି କର୍ମଶାଳାରେ ମାନବର ପ୍ରତ୍ୟେକ କର୍ମ ଅବଶ୍ୟ ଭଲ ବା ମନ୍ଦ ଫଳ ବହନ କରିବ । ଯେଉଁ ମହାଶକ୍ତି ମନୁଷ୍ୟକୁ ଅନ୍ୟାୟ-ଅତ୍ୟାଚାର, ଲୁଣ୍ଠନ ଓ ନରସଂହାର ଆଦି ଯାବତୀୟ କୁକର୍ମ କରିବାର ସାମର୍ଥ୍ୟ ଓ ସୁଯୋଗ ପ୍ରଦାନ କରିଛନ୍ତି, ତାଙ୍କ ଠାରୁ କିପରି ଆଶା କରାଯାଇପାରେ ଯେ ଜଣେ ବ୍ୟକ୍ତି ସମାଜରେ ନାନା ପ୍ରକାର ବିଭ୍ରାଟ ଓ ବିଶୃଙ୍ଖଳା ସୃଷ୍ଟି କରି, ହତ୍ୟା, ଲୁଣ୍ଠନ ଓ ଧର୍ଷଣ କରି, ଅସଂଖ୍ୟ ଜନତାର୍ ରକ୍ତ ଶୋଷି, ହଜାର ହଜାର ନରନାରୀଙ୍କର ଧନ-ଜୀବନ ଏବଂ ମାନ-ସମ୍ମାନ ସହିତ ଖେଳ ଖେଳି ଏବଂ ସ୍ରଷ୍ଟା ଓ ସୃଷ୍ଟିର ଅଧିକାର ଗୁଡ଼ିକୁ ପଦ ଦଳିତ କରି ସଗର୍ବେ ଇହଧାମ ତ୍ୟାଗ କରି ଚାଲିଯିବ ଆଉ ତା' ମୃତ୍ୟୁ ପରେ ଈଶ୍ୱର ନିଜର ସମସ୍ତ କାର୍ଯ୍ୟାଳୟ ଗୁଡ଼ିକୁ ବନ୍ଦ କରିଦେବେ ? ଏହା କେବଳ ଏକ ବିଚାର ଶକ୍ତି ହୀନ ବ୍ୟକ୍ତି ହିଁ ଚିନ୍ତା କରିପାରେ ।

ପରମେଶ୍ୱର ଅବଶ୍ୟ ନ୍ୟାୟ ପ୍ରଦାନ କରିବେ । ସତ୍ ଏବଂ ଅସତ୍ କର୍ମକୁ ସମାନ କରିଦେବେ ନାହିଁ କିମ୍ବା ଧାନ ବୁଣିଥିବା ବ୍ୟକ୍ତିକୁ ଗହମ ଦେଇଦେବେ ନାହିଁ । କୁରଆନ୍‌ରେ ଈଶ୍ୱର କହିଛନ୍ତି :-

أَمْ نَجْعَلُ الَّذِينَ آمَنُوا وَعَمِلُوا الصَّالِحَاتِ كَالْمُفْسِدِينَ فِي الْأَرْضِ أَمْ نَجْعَلُ الْمُتَّقِينَ كَالْفُجَّارِ ﴿٢٨﴾

( Al-Qur'an - 38 : 28 )

**ଭାବାର୍ଥ :-** ଯେଉଁମାନେ ବିଶ୍ୱାସ ସ୍ଥାପନ କରି ପୁଣ୍ୟ କର୍ମ କରନ୍ତି,

କ'ଣ ଆମ୍ଭେ ସେମାନଙ୍କୁ ଭୂପୃଷ୍ଠରେ ବିଶୃଙ୍ଖଳା ସୃଷ୍ଟି କରୁଥିବା ବ୍ୟକ୍ତିମାନଙ୍କ ସହିତ ସମାନ କରିଦେବା ? ଅଥବା, କ'ଣ ଆମ୍ଭେ ଧାର୍ମିକ ମାନଙ୍କ ସହିତ ଦୂରାଚାରୀ ମାନଙ୍କୁ ସମାନ କରିଦେବା ?

ହଁ, ଈଶ୍ୱର ଅପାର କରୁଣାମୟ ମଧ୍ୟ । ଯଦି ଭକ୍ତ ନିଜ କୁକର୍ମ ପାଇଁ ଅନୁତପ୍ତ ହୋଇ ତାଙ୍କ କୋଳକୁ ଫେରିଆସେ ତେବେ ସେ ତାକୁ ଫିଙ୍ଗି ମଧ୍ୟ ଦିଅନ୍ତି ନାହିଁ । ତା'ର ସମସ୍ତ ପାପକୁ କ୍ଷମା କରିଦିଅନ୍ତି ।

କରୁଣାମୟ ଈଶ୍ୱର କହୁଛନ୍ତି :-

قُلْ يَٰعِبَادِيَ ٱلَّذِينَ أَسْرَفُوا۟ عَلَىٰٓ أَنفُسِهِمْ لَا تَقْنَطُوا۟ مِن
رَّحْمَةِ ٱللَّهِ ۚ إِنَّ ٱللَّهَ يَغْفِرُ ٱلذُّنُوبَ جَمِيعًا ۚ إِنَّهُۥ هُوَ ٱلْغَفُورُ ٱلرَّحِيمُ

( Al-Qur'an - 39 : 53 )

**ଭାବାର୍ଥ :-** ତୁମେ (ଆମ୍ଭ ତରଫରୁ ସେମାନଙ୍କୁ) କହିଦିଅ "ହେ ମୋର ଦାସ ମାନେ ! ଯେଉଁମାନେ (ପାପ କରି) ନିଜପ୍ରତି ଅତ୍ୟାଚାର କରିଅଛ, ତୁମେମାନେ ଅଲ୍ଲାହଙ୍କ କରୁଣାରୁ ନିରାଶ ହୁଅନାହିଁ । ନିଶ୍ଚିତ ରୂପେ ଅଲ୍ଲାହ୍ ସମସ୍ତ ପାପ କ୍ଷମା କରିଦିଅନ୍ତି । ସେ ତ ଅସୀମ କ୍ଷମାଶୀଳ ଓ ପରମ ଦୟାମୟ ।"

# ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ଦୃଷ୍ଟିରେ ଇସଲାମ୍

କିଛିଦିନ ତଳେ ଡଃ ଜାକିର ନାଏକ, ପ୍ରେସିଡେଣ୍ଟ, ଇସ୍‌ଲାମିକ ରିସର୍ଚ୍ଚ ଫାଉଣ୍ଡେସନ, ମୁମ୍ବାଇ ''ଇସଲାମ ବିଷୟରେ ଭ୍ରାନ୍ତ ଧାରଣା'' ଶୀର୍ଷକ ଉପରେ ଦିଲ୍ଲୀରେ ଏକ ବିଶାଳ ଜନ ସମାବେଶକୁ ଉଦବୋଧନ ଦେଇଥିଲେ । ଏହି ଉତ୍ସବରେ ମୁଖ୍ୟଅତିଥି ଭାବରେ ଯୋଗଦେଇ ବିଭିନ୍ନ ଧର୍ମାବଲମ୍ବୀ ଭାଇଭଉଣୀ ମାନଙ୍କୁ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଶ୍ରୀ ଦେବାନନ୍ଦ ସରସ୍ୱତୀ ଯେଉଁ ବାର୍ତ୍ତା ଦେଲେ, ତାହା ବାସ୍ତବରେ ଇସଲାମ ବିଷୟରେ ଭ୍ରମଧାରଣା ଦୂର କରିବା ଦିଗରେ ତଥା ସାଂପ୍ରଦାୟିକ ସଦ୍‌ଭାବର ଉନ୍ନତି ପଥରେ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ । ଏହି ଆଶା ନେଇ ତାଙ୍କ ପ୍ରୋଗ୍ରାମର ଭିଡ଼ିଓ ରେକଡ଼ିଙ୍ଗରୁ ହିନ୍ଦି ଅଭିଭାଷଣର କିଛି ଗୁରୁତ୍ୱପୂର୍ଣ୍ଣ ଅଂଶକୁ ଉଦ୍ଧାର କରି ମୁଁ ଓଡ଼ିଆରେ ରୂପାନ୍ତରିତ କରୁଛି । ଜଗଦଗୁରୁ ଶଙ୍କରାଚାର୍ଯ୍ୟ ତାଙ୍କ ଅଭିଭାଷଣରେ କହିଲେ :-

> ''ଯେତେବେଳେ ଭଗବାନଙ୍କର କୃପା ହୁଏ, ଧର୍ମର ବାସ୍ତବତାକୁ ବୁଝିବାର ଅବସର ମିଳେ ।ଗତ କିଛି ବର୍ଷ ହେଲା କ୍ରମାଗତ ଭାବରେ ମୁଁ ମୁସଲମାନ ମାନଙ୍କ ଗହଣରେ ଆସୁଛି ଏବଂ ଗୋଟିଏ ନୂତନ ପ୍ରଥାର ଆରମ୍ଭ କରିଛି, ଯାହା ଦ୍ୱାରା ଜଗତଗୁରୁ ଶଙ୍କରାଚାର୍ଯ୍ୟ ମଧ ମୁସଲମାନ ମାନଙ୍କ ମଧ୍ୟରେ ଯାଇ ତାଙ୍କ ପ୍ରେମକୁ ବୁଝିପାରନ୍ତୁ ଏବଂ ଇସଲାମର ସତ୍ୟତାକୁ ହୃଦୟଙ୍ଗମ କରି, ଇସଲାମକୁ ସାରା ବିଶ୍ୱରେ ମାନବତାର ସର୍ବଶ୍ରେଷ୍ଠ ଶିକ୍ଷା ପ୍ରଦାନ କରୁଥିବା ଏକ ଧର୍ମ ରୂପେ ମାନିନେବା ପାଇଁ ଲୋକମାନଙ୍କୁ ବୁଝାଇପାରନ୍ତୁ ।''

ଇସଲାମର ସତ୍ୟତା ଉପରେ ଆଲୋକପାତ କରି ଶଙ୍କରାଚାର୍ଯ୍ୟ ମହୋଦୟ କହିଲେ :-

''ଯେତେବେଳେ ଲୋକେ ଇସଲାମକୁ ନିର୍ଦ୍ଦୟ, ମୁସଲମାନ ମାନଙ୍କୁ ନିଷ୍ଠୁର ଏବଂ (ଏହି ଧର୍ମକୁ) ତରବାରୀ ମୁନରେ ପ୍ରସାର ଲାଭ କରିଥିବା ଧର୍ମ ବୋଲି କହନ୍ତି, ସେତେବେଳେ ପୃଥିବୀରେ ଯଦି କେହି ଦୁଃଖ ପାଉଥାଏ ତେବେ ସବୁଠାରୁ ଅଧିକ ଦୁଃଖ ମୋତେ ହିଁ ହୁଏ । ଏହା ଏକ ସତ୍ୟ ନୁହେଁ, ନା କେବେ ଏହା ସତ୍ୟ ହୋଇପାରେ । ଯେଉଁ ଇସଲାମରେ, କୁରଆନ୍‌ର ପ୍ରଥମ ମନ୍ତ୍ର ଏହା ବ୍ୟକ୍ତ କରେ ଯେ ପରମାତ୍ମାଙ୍କ ବ୍ୟତୀତ କେହି ଉପାସନା ଯୋଗ୍ୟ ନୁହେଁ - ଲାଇଲାହ ଇଲ୍ଲଲ୍ଲାହ୍, ମୁହମ୍ମଦୁର୍ ରସୁଲୁଲ୍ଲାହ୍, ଭଲା ଆପଣ କୁହନ୍ତୁ, ବେଦ ମାନଙ୍କର ରସକୁ ଚିପୁଡ଼ି ମୁହମ୍ମଦ ମହୋଦୟ ପରାମାତ୍ମାଙ୍କର ଉପାସନା କରି, ପରମାତ୍ମାଙ୍କ ସଂଦେଶକୁ ଗୋଟିଏ ମନ୍ତ୍ରରେ ଦେଇଦେଲେ - ଏହାଠାରୁ ବଳି ଗ୍ରନ୍ଥ ଦୁନିଆରେ ଆଉ କ'ଣ ହୋଇପାରେ ? ଯଦି କୁର୍‌ଆନ୍‌ର ପ୍ରଥମ ମନ୍ତ୍ରକୁ ପଢ଼ି ଜଣେ ହିନ୍ଦୁ ନିଜ ଧର୍ମର ପାଳନ କରିବାକୁ ଚାହେଁ ତେବେ ତା ଠାରୁ ବଳି ଧର୍ମାତ୍ମା ବୋଧହୁଏ କେହି ହେବ ନାହିଁ । ଯଦିଓ ମୁଁ କୁରଆନ୍‌ର ଗଭୀରତା ମଧ୍ୟକୁ ଯାଇ ନାହିଁ, କିନ୍ତୁ କୁରଆନ୍‌ର ଅନୁପାଳନକାରୀମାନଙ୍କ ହୃଦୟର ଗଭୀରତା ମଧ୍ୟରେ ଯାଇ ଲକ୍ଷ୍ୟ କରିଛି ଯେ ଯଦି ଇସଲାମକୁ ସାରା ଦୁନିଆଁ ସ୍ୱୀକାର କରିନିଏ ତେବେ କିଛି ମନ୍ଦ ହେବ ନାହିଁ । ଇସଲାମ ହେଉଛି ପରମାତ୍ମାଙ୍କ ଦ୍ୱାରା ନିର୍ଦ୍ଧାରିତ ସିଦ୍ଧାନ୍ତ । ଏହା କୌଣସି ବ୍ୟକ୍ତିର ନିଜ ନିୟମ ବା ସିଦ୍ଧାନ୍ତ ନୁହେଁ ।''

ସନତାତନ ଧର୍ମର ପରିଭାଷା ବ୍ୟାଖ୍ୟା କରି ଶଙ୍କରାଚାର୍ଯ୍ୟ ମହୋଦୟ କହିଲେ :-

''କିଛି ସମୟ ହେଲା ହିନ୍ଦୁ ଧର୍ମ ନାମରେ କେତେକ ସଂସ୍ଥା ହିନ୍ଦୁ ଓ ମୁସଲମାନ ମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରିବା ପାଇଁ ଏମିତି କିଛି କାର୍ଯ୍ୟ କଲେ, ଯାହା ଯୋଗୁଁ ଜଣେ ସାଧାରଣ ଏବଂ ସିଧାସାଦା

ହିନ୍ଦୁ ବିଚରା ଏହା ଜାଣିପାରିଲା ନାହିଁ ଯେ ଇସଲାମ କ'ଣ ଏବଂ ସନାତନ ଧର୍ମ କ'ଣ ।''

ସନାତନ ଧର୍ମ ଏବଂ ଇସଲାମ ମଧ୍ୟରେ କୌଣସି ପ୍ରଭେଦ ନାହିଁ ଏବଂ ହିନ୍ଦୁ ଧର୍ମ କୌଣସି ଧର୍ମ ହିଁ ନୁହେଁ । ସନାତନ ଧର୍ମ ହିଁ ଧର୍ମ ଏବଂ ବୋଧହୁଏ ସଂସ୍କୃତର 'ସନାତନ' ଶବ୍ଦକୁ ଯଦି ଅନ୍ୟ କୌଣସି ଭାଷାରେ 'ଇସଲାମ' କୁହାଯାଏ ତେବେ କିଛି ମନ୍ଦ ହେବ ନାହିଁ । ଇସଲାମ ଏବଂ ସନାତନରେ କୌଣସି ପ୍ରଭେଦ ନାହିଁ, କାରଣ ପରମାତ୍ମା ଏକ ଏବଂ ପରମାତ୍ମା ସମସ୍ତଙ୍କର - ଏହି ସଂଦେଶ ମୁନିଋଷି ମାନେ ଦେଇଛନ୍ତି ଏବଂ ପରମାତ୍ମାଙ୍କ ପ୍ରେରିତ ଏହି ସଂଦେଶ ସ୍ୱୟଂ ଆମର ମୁହମ୍ମଦ ମହୋଦୟ ମଧ୍ୟ ଆମ୍ଭମାନଙ୍କୁ ଦେଲେ । ତେବେ ଆମେ ଭେଦଭାବ କାହିଁକି କରିବା ?''

ହିନ୍ଦୁ ଧର୍ମର ପରିଭାଷା ବର୍ଣ୍ଣନା କରି ଶଙ୍କରାଚାର୍ଯ୍ୟ କହିଲେ :-

''ମୁଁ ଏହା ମଧ୍ୟ ଜାଣେ ଯେ ଭାରତର ପ୍ରକୃତ ହିନ୍ଦୁ, ଯେଉଁମାନେ ବାସ୍ତବରେ ସନାତନଧର୍ମୀ, ସେମାନେ ମୁସଲମାନ ମାନଙ୍କଠାରୁ ପ୍ରେମ ଚାହାନ୍ତି, ବିଭେଦ ଚାହାନ୍ତି ନାହିଁ । ଯଦି ଜଣେ ଉତ୍ତମ ହିନ୍ଦୁ ଏବଂ ସେ ନିଜକୁ ପ୍ରକୃତ ହିନ୍ଦୁ କହୁଛି, ତେବେ ପ୍ରଥମେ ସେ ସନାତନ ଧର୍ମକୁ ମାନିବା ଉଚିତ୍ । ଯଦି ହିନ୍ଦୁର ପରିଭାଷା 'ସନାତନ ଧର୍ମ' ଠାରୁ ଅଲଗା କିଛି ଅଛି, ତେବେ ଏପରି ହିନ୍ଦୁ ଧର୍ମକୁ ମୁଁ ଜଳାଂଜଳି ଦେଉଛି । ହିନ୍ଦୁ ଧର୍ମ ପୁଣି କିଛି ନୁହେଁ । ତାହାହିଁ ହିନ୍ଦୁ ଧର୍ମ, ଯାହା ବେଦକୁ ସ୍ୱୀକାର କରେ, ପୁରାଣକୁ ମାନେ ଏବଂ ସନାତନକୁ ମାନେ ।''

ଧର୍ମର ସିଦ୍ଧାନ୍ତ ପରିବର୍ତ୍ତନଶୀଳ ନୁହେଁ, ଏହା ବର୍ଣ୍ଣନା କରି ସେ କହିଲେ :-

''ଗୋଟିଏ କଥା ମନେ ରଖିବେ, ଯେବେଠାରୁ ପୃଥିବୀ ସୃଷ୍ଟି ହେଲା ଏବଂ ଯେ ପର୍ଯ୍ୟନ୍ତ ଏ ପୃଥିବୀ ରହିଥିବ, ଈଶ୍ୱରଙ୍କ ସିଦ୍ଧାନ୍ତ ଗୋଟିଏ ଥିଲା, ଗୋଟିଏ ରହିଛି ଏବଂ ଗୋଟିଏ ରହିଥିବ । ମାନିବା ଲୋକେ

ଯଦି ପରସ୍ପର ମଧ୍ୟରେ ଭେଦଭାବ ସୃଷ୍ଟି କରନ୍ତି, ସେଥିରେ ତାଙ୍କର କୌଣସି ଦୋଷ ନାହିଁ । ଦୋଷ ସେମାନଙ୍କର ଯେଉଁମାନେ ଭେଦଭାବ ସୃଷ୍ଟି କରି ପ୍ରତିଷ୍ଠା ଅର୍ଜନ କରିବା ପାଇଁ ଚାହାନ୍ତି । ବିଶେଷ କରି ଏତକ ଜାଣି ରଖନ୍ତୁ ଯେ 'ଧର୍ମ' ଭେଦଭାବ ଦୂରକରେ ଏବଂ 'ରାଜନୀତି' ଭେଦଭାବ ବୃଦ୍ଧି କରେ । ରାଜନୀତିର ପ୍ରଭାବ କେବଳ ରାଷ୍ଟ୍ରର ବ୍ୟବସ୍ଥା ପର୍ଯ୍ୟନ୍ତ ସୀମିତ କିନ୍ତୁ ଧର୍ମ ସମଗ୍ର ବିଶ୍ୱ ପାଇଁ । ରାଜନୀତି ଦ୍ୱାରା ଆପଣ କେବଳ ଦେଶର ମଙ୍ଗଳ କରିପାରନ୍ତି କିନ୍ତୁ ଯଦି ବିଶ୍ୱର ହିତ ସାଧନ କରିବାକୁ ଚାହାନ୍ତି, ତେବେ ଧର୍ମର ଆବଶ୍ୟକତା ରହିଛି ଏବଂ ତାହା କୁରଆନ୍‌ରେ ସ୍ପଷ୍ଟ ରୂପେ ବୁଝାଇ ଦିଆଯାଇଛି ।''

ବିଶ୍ୱଶାନ୍ତି ପାଇଁ କୁରଆନର ପ୍ରସାର ଏବଂ ଆବଶ୍ୟକତା ଉପରେ ଗୁରୁତ୍ୱ ଦେଇ ଶଙ୍କରାଚାର୍ଯ୍ୟ ମହୋଦୟ କହିଥିଲେ :-

''ମୁଁ ଏହା ଚାହେଁ ଯେ ସାରା ଦୁନିଆରେ ଏହି ଗ୍ରନ୍ଥର ପ୍ରସାର ହେଉ ଏବଂ ଏହାର ପ୍ରସାର ହେବା ଉଚିତ । ମୁଁ ମୁସଲମାନ ମାନଙ୍କୁ ଗୋଟିଏ ଜରୁରୀ କଥା କହିବାକୁ ଚାହେଁ, ଏବଂ ସମସ୍ତେ ଏକଥା ଉପରେ ଧ୍ୟାନ ଦିଅନ୍ତୁ - ଆପଣଙ୍କ ପଡ଼ିଶାରେ ଯେ କୌଣସି ଭାଷା ଜାଣିଥିବା ବ୍ୟକ୍ତି ରହୁଥାଉ, ଚେଷ୍ଟା କରି କୁରଆନ୍ ଭଳି ପବିତ୍ର ଗ୍ରନ୍ଥକୁ ତା'ରି ଭାଷାରେ ତା' ନିକଟରେ ପହଁଚାଇ ଦିଅନ୍ତୁ । ମୋ ମତରେ ଯଦି ସାରା ପୃଥିବୀରେ କୁରଆନ୍ ପହଁଚିବ, ତେବେ ସାରା ବିଶ୍ୱରେ ଶାନ୍ତି ଓ ସଦ୍‌ଭାବ ପ୍ରତିଷ୍ଠା ହେବ ।''

ବେଦ ଏବଂ କୁରଆନ୍‌ର ମୂଳତତ୍ତ୍ୱ ଉପରେ ଆଲୋକପାତ କରି ସେ କହିଲେ :-

''ଶଙ୍କରାଚାର୍ଯ୍ୟ ଜାଣନ୍ତି ଯେ ଇସଲାମ ଏକ ପ୍ରବଞ୍ଚନା ନୁହେଁ, ଶଙ୍କରାଚାର୍ଯ୍ୟ ଏହା ଜାଣନ୍ତି ଯେ ଇସଲାମ ହାନିକାରକ ପଥ ନୁହେଁ, ଏବଂ ଶଙ୍କରାଚାର୍ଯ୍ୟଙ୍କୁ ଏହା ଜଣା ଅଛି ଯେ ଯାହା ବେଦରେ ଲେଖା ଅଛି ତାହାହିଁ କୁରଆନ୍‌ରେ ଲେଖା ଅଛି ।''

# ମୁସଲମାନ କେବଳ କୁର୍‌ଆନ୍‌ର ଅନୁପାଳନ କାହିଁକି କରନ୍ତି ?

ପାଠକ ପାଠିକା ମାନଙ୍କ ମନରେ ପ୍ରଶ୍ନ ଉଠିପାରେ ଯେ ଯଦି ବେଦ, ବାଇବେଲ ଏବଂ କୁର୍‌ଆନ୍‌ରେ ଧର୍ମର ସମାନ ମୌଳିକ ଶିକ୍ଷା ରହିଛି ଏବଂ ଯଦି ପୃଥିବୀ ପୃଷ୍ଠରେଆସିଥିବା ସମସ୍ତ ଦିବ୍ୟଗ୍ରନ୍ଥ ଗୋଟିଏ ଜୀବନମାର୍ଗର ଶିକ୍ଷା ପ୍ରଦାନ କରିଛନ୍ତି, ତେବେ ମୁସଲମାନମାନେ କେବଳ କୁର୍‌ଆନ୍‌ର ଅନୁପାଳନ କରନ୍ତି କାହିଁକି ? ସେମାନେ ପୂର୍ବ ଗ୍ରନ୍ଥ ଗୁଡ଼ିକୁ ମାର୍ଗଦର୍ଶନ ପାଇଁ କାହିଁକି ଗ୍ରହଣ କରନ୍ତି ନାହିଁ ?

ଏହା ଏକ ସ୍ୱାଭାବିକ ପ୍ରଶ୍ନ । ମୁଁ ସଂକ୍ଷିପ୍ତ ଉତ୍ତରଟିଏ ଦେଉଛି ।



ପ୍ରକୃତରେ ଏହା କୌଣସି ଜାତିଗତ ଭେଦଭାବ ଯୋଗୁଁ ନୁହେଁ, ବରଂ ଏହାର ଯୁକ୍ତିଯୁକ୍ତ କାରଣ ରହିଛି ।

ଦିବ୍ୟଗ୍ରନ୍ଥ, କୌଣସି ଯୁଗର ହେଉ, କୌଣସି ଭାଷାରେ ହେଉ, ପୃଥିବୀର ଯେ କୌଣସି ସ୍ଥାନରେ ଅବତୀର୍ଣ୍ଣ ହୋଇଥାଉ କିମ୍ବା ଯେକୌଣସି ଧର୍ମ ପ୍ରବର୍ତ୍ତକ ବା ମୁନି ଋଷିଙ୍କ ସୂତ୍ରରୁ ଆସିଥାଉ - ସବୁଗୁଡ଼ିକ ଆମ ପରମେଶ୍ୱର ଅଲ୍ଲାହଙ୍କ ଦ୍ୱାରା ପ୍ରେରିତ ପୁସ୍ତକ ଏବଂ ଗୋଟିଏ ଧର୍ମ ପଥର ପ୍ରଦର୍ଶକ । ଏହି ସତ୍ୟଟି ଉପରେ ବିଶ୍ୱାସ ରଖିବା ତଥା ସବୁ ଦିବ୍ୟଗ୍ରନ୍ଥ ଏବଂ ସମସ୍ତ ଧର୍ମଦୂତଙ୍କୁ ସମାନ ଭାବରେ ସମ୍ମାନ ପ୍ରଦର୍ଶନ କରିବା ମୁସଲମାନ ହେବାପାଇଁ ଏକ ସର୍ତ୍ତ । ଏହି ମୌଳିକ ବିଶ୍ୱାସ ବିନା ଜଣେ ମୁସଲମାନ ହୋଇପାରିବ ନାହିଁ ।

କିନ୍ତୁ ଆମେ ଜାଣିରଖିବା ଉଚିତ ଯେ ଈଶ୍ୱରଙ୍କର ନିୟମ ତାଙ୍କ ଧର୍ମଦୂତ

ଏବଂ ଧର୍ମଗ୍ରନ୍ଥ ମାଧ୍ୟମରେ ହିଁ ମନୁଷ୍ୟ ନିକଟରେ ପହଁଞ୍ଚି ଥାଏ । ବେଦ, ବାଇବେଲ ଏବଂ କୁରଆନ ମଧ୍ୟ ଏଇ ସୂତ୍ର ମାଧ୍ୟମରେ ଅବତୀର୍ଣ୍ଣ ହୋଇଛି । ଏହା ବ୍ୟତୀତ ମାନବ ସମାଜକୁ ପଥପ୍ରଦର୍ଶନ କରିବାର କୌଣସି ତୃତୀୟ ବାଟ ନାହିଁ । ତେଣୁ ଧର୍ମର ଏହି ଦୁଇଟି ମାଧ୍ୟମ (Source) ବିଷୟରେ ଭଲ ଭାବରେ ଅନୁସନ୍ଧାନ କରିବା ଅତ୍ୟନ୍ତ ଆବଶ୍ୟକ । ପୃଥିବୀ ପୃଷ୍ଠରେ ଯେବେ ମଧ୍ୟ ଧର୍ମ ଅପଭ୍ରଂଶ ହୋଇଛି, ତାହା ଧର୍ମଗ୍ରନ୍ଥରେ ବା ଧର୍ମଦୂତଙ୍କ ଶିକ୍ଷାରେ ପରିବର୍ତ୍ତନ ବା ଅପମିଶ୍ରଣ ଯୋଗୁଁ ହୋଇଛି । ତେଣୁ ଯେକୌଣସି କାହାଣୀ ବା କିମ୍ବଦନ୍ତୀ ଉପରେ ନିର୍ଭର କରି କୌଣସି ବାଣୀକୁ ଈଶ୍ୱରବାଣୀ ବୋଲି ଗ୍ରହଣ କରିନେବା ଉଚିତ ନୁହେଁ । 'ଧର୍ମ' ମନେ କରି ମନୁଷ୍ୟ ଯେଉଁ ଆଦେଶର ପାଳନ କରିବ ତାହା ଅବଶ୍ୟ 'ଈଶ୍ୱରଆଜ୍ଞା' ହେବା ଉଚିତ୍ - ମାନବକୃତ ଦର୍ଶନ ବା ନିତୀ ନିୟମ ନୁହେଁ ।

୧. କୁରଆନର ଅନୁପାଳନ ପଛରେ ପ୍ରଥମ କାରଣଟି ହେଉଛି ଯେ ଏହା ବିଶୁଦ୍ଧ ଈଶ୍ୱରବାଣୀ, ଯେଉଁଥିରେ ମାନବ କିଛି ପରିବର୍ତ୍ତନ କରିନାହିଁ । ଏହା ଈଶ୍ୱରଙ୍କର ଏକମାତ୍ର ଦିବ୍ୟଗ୍ରନ୍ଥ ଯାହାର ସୁରକ୍ଷା ପାଇଁ ସ୍ୱୟଂ ଈଶ୍ୱର ସଂକଳ୍ପବଦ୍ଧ ।



ଅନ୍ୟ ପକ୍ଷରେ ଯେଉଁ ଧର୍ମଗ୍ରନ୍ଥ ବିଷୟରେ କୁହାଯାଏ ଯେ ଏଗୁଡ଼ିକ ଦିବ୍ୟବାଣୀ, ତାହା ମଧ୍ୟରୁ କେତେକ ଗ୍ରନ୍ଥର ମୂଳ ରଚ଼ନା ଆଉ ନାହିଁ । କେବଳ ସେଗୁଡ଼ିକର ଅନୁବାଦ ରହିଛି । କେତେକ ପୁସ୍ତକରେ ଈଶ୍ୱରଙ୍କ ବାଣୀ ଅଛି, ଧର୍ମପ୍ରବର୍ତ୍ତକ ମାନଙ୍କର ବାଣୀ ଅଛି ଏବଂ ଧର୍ମଗୁରୁ ଓ ପଣ୍ଡିତ ମାନଙ୍କର ରଚ଼ନା ମଧ୍ୟ ରହିଛି । ସବୁଗୁଡ଼ିକ ଏପରି ମିଶିଯାଇଛି ଯେ ତନ୍ମଧ୍ୟରୁ କେଉଁଟି ଈଶ୍ୱରବାଣୀ ଏବଂ କେଉଁଟି ମନୁଷ୍ୟ ରଚ଼ନା ଜାଣିବା ଅସମ୍ଭବ । ଏହି କାରଣ ଯୋଗୁଁ କେତେକ ଗ୍ରନ୍ଥରେ ବୈଜ୍ଞାନିକ ତ୍ରୁଟି ଏବଂ ଅଶ୍ଳୀଳତା ଦେଖିବାକୁ ମିଳେ ଏବଂ କେତେକ ପୁସ୍ତକର ଶିକ୍ଷା ମଧ୍ୟ ସାର୍ବଜନୀନ ସତ୍ୟର ବିରୋଧୀ । ଈଶ୍ୱରଙ୍କ ଗ୍ରନ୍ଥରେ ଏ ଭଳି ତ୍ରୁଟି ହେବା ସମ୍ଭବ ନୁହେଁ ।

୨. ଦ୍ୱିତୀୟତଃ ଦିବ୍ୟବାଣୀ ପ୍ରକାଶ କରିଥିବା ବାର୍ତ୍ତାବାହକ ହିଁ ଏହାର ଅର୍ଥ କରନ୍ତି

ଏବଂ ଧର୍ମ ବିଧିର ବ୍ୟାଖ୍ୟା କରିଥାନ୍ତି । ବିଭିନ୍ନ ଉପାସନା ତଥା କର୍ମକାଣ୍ଡର ପଦ୍ଧତି ତାଙ୍କରି ଅନ୍ତରରେ ପ୍ରକଟିତ ହୋଇଥାଏ । ଏଣୁ ତାଙ୍କରି ଅନୁକରଣ କରିବା ପାଇଁ ତତ୍‌କାଳୀନ ଜନସମାଜକୁ ନିର୍ଦ୍ଦେଶ ଦିଆଯାଇଥାଏ । ପ୍ରଥମେ ସେ ନିଜେ ଦିବ୍ୟଗ୍ରନ୍ଥର ଅନୁପାଳନ କରନ୍ତି । ତେଣୁ ସେହି ଧର୍ମଦୂତଙ୍କର ଦୈନନ୍ଦିନ କର୍ମମୟ ଜୀବନର ଇତିହାସ ବିନା ଈଶ୍ୱରଙ୍କ ଆଦେଶ ଗୁଡ଼ିକ ଠିକ୍ ଠିକ୍ ପାଳନ କରାଯିବା ସମ୍ଭବ ନୁହେଁ । କେବଳ ଧର୍ମଗ୍ରନ୍ଥ ସଠିକ ମାର୍ଗ ଦର୍ଶନ କରିବାପାଇଁ ଯଥେଷ୍ଟ ନୁହେଁ ।

ଆମ ନିକଟରେ ବର୍ତ୍ତମାନ କେବଳ କୁରଆନର ବାର୍ତ୍ତା ଆଣିଥିବା ବାର୍ତ୍ତାବାହକଙ୍କର ସଂପୂର୍ଣ୍ଣ ଜୀବନ ଇତିହାସ ରହିଛି ଯାହା ସହାୟତାରେ କୌଣସି ନିର୍ଦ୍ଦିଷ୍ଟ ଆଦେଶର ସଠିକ ଅର୍ଥ କରାଯାଇପାରେ ଏବଂ ତାଙ୍କୁ ଅନୁକରଣ କରି ଈଶ୍ୱରଙ୍କର ସେବା ଉପାସନା କରାଯାଇପାରେ । ମହାମାନ୍ୟ ଧର୍ମଦୂତ ମହମ୍ମଦଙ୍କ ବ୍ୟତୀତ ଈଶ୍ୱରଙ୍କର ଅନ୍ୟ କୌଣସି ଧର୍ମପ୍ରବର୍ତ୍ତକଙ୍କର ଜୀବନୀ ବିଶଦ ଭାବରେ ଇତିହାସ ପୃଷ୍ଠାରେ ନାହିଁ ।



୩. ତୃତୀୟ କାରଣଟି ହେଉଛି ଯେ କୁରଆନ ଈଶ୍ୱରଙ୍କର ଅନ୍ତିମ ପ୍ରକାଶନ । ସ୍ୱୟଂ ଈଶ୍ୱର ଏହାର ସୁରକ୍ଷା ପାଇଁ ସଂକଳ୍ପବଦ୍ଧ ଥିବା ହେତୁ ଏଥିରେ କୌଣସି ପ୍ରକାର ପରିବର୍ତ୍ତନ ବା ଅପମିଶ୍ରଣର ସଂଭାବନା ଆଦୌ ନାହିଁ । କୁରଆନ୍ ବ୍ୟତୀତ ପୂର୍ବ ପ୍ରେରିତ ଅନ୍ୟ କୌଣସି ଦିବ୍ୟଗ୍ରନ୍ଥକୁ ଅନ୍ତିମ ଗ୍ରନ୍ଥ ରୂପେ ଘୋଷଣା କରାଯାଇନାହିଁ । ମହାମାନ୍ୟ ମୁହମ୍ମଦଙ୍କ ବ୍ୟତୀତ କୌଣସି ଈଶ୍ୱର ଦୂତ ନିଜକୁ ଅନ୍ତିମ ବାର୍ତ୍ତାବାହକ (Final Messenger) ବୋଲି କହୁନଥିଲେ କିମ୍ବା ଏହା ମଧ୍ୟ କହୁନଥିଲେ ଯେ ତାଙ୍କ ମାଧ୍ୟମରେ ପ୍ରେରିତ ଗ୍ରନ୍ଥଟି ଈଶ୍ୱରଙ୍କର ଅନ୍ତିମ ବାର୍ତ୍ତା । ଅନ୍ତିମ ପ୍ରକାଶନ ହୋଇଥିବା କାରଣରୁ ମଧ୍ୟ କୁରଆନର ଆଦେଶ ପାଳନୀୟ ।

ଉଦାହରଣ ସ୍ୱରୂପ ଜଣେ ପିତା ଦୂରରେ ରହୁଥିବା ନିଜ ସନ୍ତାନକୁ ବିଭିନ୍ନ ଉପଦେଶ ଦେଇ ଏକାଧିକ ପତ୍ର ଲେଖି ଥାଆନ୍ତି । ସନ୍ତାନର ବୟସ ଓ

ବୁଦ୍ଧିରେ ପରିପକ୍ୱତା, ପାରିପାର୍ଶ୍ୱିକ ଅବସ୍ଥାର ଭିନ୍ନତା ତଥା ତତ୍କାଳୀନ ସମୟର ଆବଶ୍ୟକତାକୁ ନେଇ ପିତାଙ୍କ ବିଭିନ୍ନ ଉପଦେଶ ଗୁଡ଼ିକରେ କେତେକ ପରିବର୍ତ୍ତନ ମଧ୍ୟ ଘଟିଥାଏ ।

ମନେ କରନ୍ତୁ ଜଣେ ପୁତ୍ର ନିକଟକୁ ପିତାଙ୍କ ଠାରୁ ବିଭିନ୍ନ ସମୟରେ ଏକାଧିକ ଚିଠି ଆସିଛି । କିଶୋର ଜୀବନ, କଲେଜ ଜୀବନ ଏବଂ ବିବାହିତ ଜୀବନରେ ସେ ପୁତ୍ରକୁ ବିଭିନ୍ନ ଉପଦେଶ ଦେଇ ଆସିଛନ୍ତି । ଗୋଟିଏ ଚିଠି ଏବେ ସଦ୍ୟ ଆସିଛି । ବର୍ତ୍ତମାନ ପୁଅ ବାପାଙ୍କର ସବୁ ଚିଠି ଗୁଡ଼ିକ ଧରି ବସିଛି, ଯେଉଁଥିରେ ସେ କେତେକ ଭିନ୍ନତା ମଧ୍ୟ ଲକ୍ଷ୍ୟ କରୁଛି । ସମସ୍ତ ଚିଠି ତ ତା ନିଜ ବାପାଙ୍କର, କିନ୍ତୁ ସେ ବର୍ତ୍ତମାନ କେଉଁ ଚିଠିର ଆଦେଶ ପାଳନ କରିବ ? ନିଶ୍ଚିତ ଭାବରେ ଅନ୍ତିମ ଆଦେଶ (Latest order) ପାଳନ କରିବା ଉଚିତ୍ । ଏହାହିଁ ଜଣେ ମୁସଲମାନ କରେ । ସେ ସମସ୍ତ ଦିବ୍ୟଗ୍ରନ୍ଥ ଗୁଡ଼ିକୁ ଈଶ୍ୱର ପ୍ରେରିତ ବୋଲି ବିଶ୍ୱାସ କରି ମଧ୍ୟ କୁରଆନର ଅନୁପାଳନ କରିବା ପାଇଁ ବାଧ୍ୟ ।








ଲେଖକଙ୍କର ଆଗାମୀ ପୁସ୍ତକ

**ଇସ୍‌ଲାମ୍ ପରିଚୟ**

ପ୍ରକାଶ ଅପେକ୍ଷାରେ .....

ମୂଲ୍ୟ : ୪୦ ଟଙ୍କା ମାତ୍ର